ବାରମାସୀ

ଅରବିନ୍ଦ ଦାଶ
ସିଂହାପୁର, ଧର୍ମଶାଳା, ଯାଜପୁର, ୭୫୫୦୦୮
ଫୋନ୍: ୯୮୬୧୨୬୯୭୨୪

ପ୍ରକାଶକ : କୃଷ୍ଣା
ଜାରକା, ଧର୍ମଶାଳା, ଯାଜପୁର, ଫୋନ୍:- ୯୨୩୮୫୧୯୮୧୫

ପ୍ରଥମ ସଂସ୍କରଣ : ୦୮ / ୦୩ / ୨୦୨୩

ମୂଲ୍ୟ : ଟ୧୦୦/

---

# BARAMASEE

BY

Aurobinda Dash
Singhapur, Dharmasala, Jajpur
Ph: 9861269724

**Published by: KRUSNA**
Jaraka, Dharamasala, Jajpur, Ph: 9238519815

**First Edition :** 08 / 03 / 2023

**Price-** Rs. 100 /

---

**ISBN. 9789393178275**

ଏ ଆଦ୍ୟ ଅର୍ଘ୍ୟ
ସ୍ନେହମୟୀ ଜନନୀ
ଓ
ସ୍ୱର୍ଗବାସୀ ପିତାଙ୍କ
ଚରଣ କମଳରେ

ବୁଲୁ

# ଅଭିମତ

'ବାରମାସୀ' କବିତା ସଂକଳନର କବି ଶ୍ରଦ୍ଧେୟ ଅରବିନ୍ଦ ଦାଶଙ୍କୁ କିଛି ଦଶନ୍ଧି ପୂର୍ବରୁ ଜାଣିବାର ଅବକାଶ ମିଳିଛି । ଜଣେ ମେଧାବୀ, ଭଗବତ୍ ବିଶ୍ୱାସୀ, ସଂଗଠକ, ସେବକ ତଥା ମୌଳିକ ସ୍ରଷ୍ଟା ସେ । ସ୍ଥାନୀୟ ପତ୍ର- ପତ୍ରିକାରେ ତାଙ୍କ ପତ୍ରସ୍ଥ କବିତାର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ସ୍ୱତଃ ବାରି ହୋଇପଡ଼େ । ଉକ୍ତ ଗ୍ରନ୍ଥରେ ସ୍ଥାନିତ କବିତା ମଧ୍ୟରୁ କେତେକ ପ୍ରକାଶିତ ଏବଂ ଅନ୍ୟ କେତେକ ସାମୟିକ ପରିସ୍ଥିତି, ତିଥି, ଜୟନ୍ତୀ ଆଦି ପରିପ୍ରେକ୍ଷୀରେ ରଚିତ ।

ଧର୍ମ, ଆଧ୍ୟାତ୍ମିକତା, ଜାତୀୟତା, ବାତ୍ସଲ୍ୟ ମମତା, ପ୍ରକୃତି ପ୍ରୀତି ଆଦି ପ୍ରସଂଗ ଆଧାରିତ କବିତା ସମୁଚ୍ଚୟର ମର୍ମବାଣୀ । ପାରିବାରିକ ସଂସ୍କାର, ସହଜାତ ପ୍ରତିଭା, ଆନୁଷ୍ଠାନିକ ଉଚ୍ଚ ଶିକ୍ଷା, ଶିକ୍ଷକ ଜୀବନର ନାନାବିଧ ଅନୁଭୂତି, ଶିକ୍ଷକ ସଂଗଠନ ସହ ସଂପୃକ୍ତି, ସେବା, ସହଯୋଗ, 'ସମର୍ପିତବୁଦ୍ଧି' ତାଙ୍କୁ ଏ ଦିଗରେ ଉତ୍‌ପ୍ରେରିତ କରିଛି ।

ଆତ୍ମ ପ୍ରଚାର ପ୍ରୟାସରୁ ନିରାପଦ ଦୂରତ୍ୱ ରକ୍ଷା କରି ମଗ୍ନ ସାଧନାରେ ଧ୍ୟାନସ୍ଥ ଶ୍ରୀ ଦାଶ । ପୁରାଣ, ଇତିହାସର ଦିଗନ୍ତ ସମୁଜ୍ଜ୍ୱଳ ଚରିତ୍ରମାନଙ୍କର ଉତ୍ତୁଂଗ ଚେତନା ଆଜି ଯୁଗର ଧ୍ୟେୟ ହେବାର ଯଥାର୍ଥତା, ପ୍ରାସଙ୍ଗିକତା ରହିଛି ।

ସାଂପ୍ରତିକ ଶିକ୍ଷା ସଂକୀର୍ଣ୍ଣ ବ୍ୟକ୍ତି କୈନ୍ଦ୍ରିକ ଦୃଷ୍ଟିର ସାଧନ ହୋଇଛି । ସୁତରାଂ କବି ଏହି ପ୍ରଚଣ୍ଡ ମୋହଭଂଗ ଉଦ୍ଦେଶ୍ୟରେ, ଜାତୀୟ ଆଦର୍ଶ ଉଦ୍‌ବୁଦ୍ଧ ଉଦାର ବ୍ୟକ୍ତିତ୍ୱ ଗଠନର ସାମ ଗାନ ଶୁଣାଇଛନ୍ତି ।

ମରିଗଲେ ସଦା ଜୀବିତ ରହିବୁ
ସବୁରି ଲୋକଙ୍କ ପ୍ରାଣେ ।- (ଅମର ଜୀବନ)

ଉତ୍ସର୍ଗୀକୃତ, 'ବହୁଜନହିତାୟ' ମନ୍ତ୍ରରେ ଦୀକ୍ଷିତ ହେବା ପାଇଁ ଆହ୍ୱାନ ଦେଇଛନ୍ତି । ବ୍ୟକ୍ତି ନିର୍ମାଣ, ରାଷ୍ଟ୍ର ନିର୍ମାଣ କରିବାର ମହନୀୟ ପ୍ରେରଣା ଉଦ୍‌ବୁଦ୍ଧ କବି, କବିତାମାନଙ୍କରେ ମହତୀ ଆହ୍ୱାନର ମାଂଗଳିକ ସ୍ୱର ଶୁଣାଇବାର ପ୍ରୟାସୀ ।

ସନାତନ ପରଂପରା ବିଶ୍ୱାସୀ କବି ଆଗାମୀ ଅନାଗତ ଉଜ୍ଜ୍ୱଳମୟ ନବ ସୂର୍ଯ୍ୟୋଦୟର ଆଶାପୋଷଣ କରିଛନ୍ତି । ଏକୀଭୂତ ସମନ୍ୱିତ ଦୈବୀଶକ୍ତିର ଐକିକ ରୂପ ଦୁର୍ଗାଙ୍କୁ ଯାବତୀୟ ଦୁଃସମୟ, ଦୁର୍ଗତି, ଦୁସ୍ଥିତି ନିବାରଣ ପୂର୍ବକ ଦିବ୍ୟ ସମାଜ ଗଠନର ପ୍ରେରଣା ସଂପ୍ରେରିତ କରିବା ନିମନ୍ତେ ପ୍ରାର୍ଥନା କରିଛନ୍ତି ।

ସୁସ୍ଥ ସମାଜ ଗଠନ, ଦିବ୍ୟ ବିଭୂତି ମଣ୍ଡିତ ତ୍ୟାଗପୂତ, ମହିମାନ୍ୱିତ, ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ ଏବଂ ଆଦର୍ଶ ରାଷ୍ଟ୍ର ନିର୍ମାଣର ସ୍ୱପ୍ନ ସମର୍ଥକ କବିତାରେ ପରିଦୃଷ୍ଟ । ଆଗାମୀ ଦିନରେ ତାଙ୍କ ଲେଖନୀ ଅଜସ୍ର ସ୍ରାବୀ ହେଉ, ଜୀବନ ସରଣୀ ଆଲୋକିତ ହେବାର କାମନା କରି ରହୁଛି ।

ଇତି

ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ, ଧର୍ମଶାଳା, ଯାଜପୁର

# ଟିକେ କହି ରଖେ......

ଦିନର ଏକ ଅନାବଶ୍ୟକ ସମୟରେ ଅତ୍ୟଧିକ କ୍ଳାନ୍ତି ଯୋଗୁ ଟିକେ ଆଖି ବନ୍ଦ ହୋଇଯାଇଥାଏ । ହଠାତ୍ ଫୋନ୍ ରିଂ ହେଲା, ସେପଟୁ ଶୁଭିଲା "କିରେ ତୋ' ଲେଖାଗୁଡ଼ିକ ଫୋନ୍‌ରେ ଦେଖୁଛି, ପଢୁଛି । ଭଲ ତ ଲେଖୁଛୁ । ତାକୁ ଏକାଠି କରି ଗୋଟିଏ ବହି ଛପଉନୁ..... ।" "ସାର୍ ନମସ୍କାର । ସାର୍, ଟିକେ ସୁବିଧା ହେଲେ ନିଶ୍ଚୟ ଛପେଇବି.... ।"

ହଠାତ୍ ଦିନେ ସାର୍ ଆସି ଘରେ ପହଞ୍ଚିଗଲେ । କହିଲେ, ଦେଲୁ ଦେଲୁ ସେ ଲେଖାଗୁଡ଼ିକ । ମୁଁ ଟିକେ ଦେଖି ଦିଏ, ତା'ପରେ ଦେଇଦେବା ପ୍ରେସ୍‌ରେ । ଟିକେ ଆର୍ଥିକ ସମସ୍ୟା ପାଇଁ ପଛାଉଥିଲି । ତଥାପି କୁନ୍ଥୁକୁନ୍ଥୁ ହେଇ ଦେଇଦେଲି । ବହୁତ ଦିନ ଗଡ଼ିଗଲା । ତା'ପରେ ହଠାତ୍ ପୁଣି ଫୋନ୍ କଲେ, ଆସିଲୁ ଟିକେ ଜାରକା ଯିବା । ପ୍ରେସ୍‌ରେ ତୋ' ଲେଖାଗୁଡ଼ିକ ଦେଇ ଦେବା । ଗଲି ସାର୍‌ଙ୍କ ସହ । ପ୍ରେସ୍‌ରେ ଦିଆ ହୋଇଗଲା । ପୁଣି କିଛି ଦିନପରେ ଆରେ, ଯାଆନି ସେ ପ୍ରେସ୍‌ରୁ ତୋ' ଡି.ଟି.ପି. କପିଟା ଆଣି ଚେକ୍ କରିଦେ । ଅଳ୍ପ ଦିନ ପରେ ମୋର ଗୋଟେ ତୋ'ର ଗୋଟେ ବହି ବାହାର କରିଦେବା ।

ଏସବୁ କୌଣସି ଚଳଚ୍ଚିତ୍ରର ପଂକ୍ତି ନୁହେଁ । ଜୀବନର ସଦ୍ୟ ଅନୁଭୂତିର ଏକ ଖିଅ । ସେ ସାର୍ ଆଉ କିଏ ନୁହନ୍ତି, ପିତୃ ପ୍ରତିମ ଗୁରୁ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା ମହୋଦୟ । ସାର୍‌ଙ୍କ ପାଦତଳେ କୋଟି ଜୁହାର । ମରୁଭୂମିରେ ବିଶାଳ ବଟବୃକ୍ଷର ସମ୍ଭବ ହେଲାପରି ମୋର ଜୀବନର ଏ ମାନସ କନ୍ୟା 'ବାରମାସୀ'ର ଆତ୍ମପ୍ରକାଶ ସଫଳ ହେବା ଯାଉଛି କେବଳ ସାର୍‌ଙ୍କ ପାଇଁ । ମୁଁ ଜାଣିଛି ମୋର ଏ ଲେଖାଗୁଡ଼ିକ ଅପରିପକ୍ୱ, ପାଠକଙ୍କ ମନ ଛୁଇଁ ପାରିବ ନାହିଁ । କୈଶୋର ଅବସ୍ଥାରୁ ଲେଖା ହୋଇଥିବା ଏ କବିତାଗୁଡ଼ିକ ଟୁକୁଡ଼ା କାଗଜରୁ ଛୋଟ ଖାତା ତା'ପରେ ଡାଇରୀରେ ଲେଖା ହେବା ପରେ ମୁଁ କେବେ ସ୍ୱପ୍ନରେ ଭାବିନଥିଲି ଏହା ଏକ ମୁଦ୍ରିତ ବହିରେ ସାଇତା ହୋଇଯିବ । ଆଜି ସେ ଦିନଟି ଉପନୀତ । ଅସଜଡ଼ା ଲେଖାଗୁଡ଼ିକ ଅସଜଡ଼ା ଢଂଗରେ ବହିଟିରେ ସ୍ଥାନିତ । ମଣିଷ ଜୀବନକୁ ବାରମାସ ସହ ତୁଳନା କରାଯାଇ ଜୀବନର ବିଭିନ୍ନ ଅବସ୍ଥାରେ ପହଞ୍ଚିବା ବ୍ୟକ୍ତି ବିଶେଷଙ୍କ

ପାଇଁ କିଛି କିଛି କବିତା ରଖାଯାଇଛି । ତେଣୁ ବହିଟିର ନାମକୁ ମଧ୍ୟ 'ବାରମାସୀ' ରଖାଯାଇଛି ।

କବିତାଗୁଡ଼ିକ ଲେଖାଯିବା ପରେ ଆଗ୍ରହର ସହ 'ବୋଉ' ଶୁଣେ । ଅଜା (ଲକ୍ଷ୍ମଣ ଦାଶ) ଶୁଣନ୍ତି । କାମଧନ୍ଦା ସାରି ବିଳମ୍ବ ରାତ୍ରିଯାଏ ଧର୍ମପତ୍ନୀ ଶୁଣନ୍ତି । ସାନ ବଡ଼ ଭାଇ ଭଉଣୀ ପୁଅ ଝିଅମାନେ ମଧ୍ୟ ଶୁଣି ଶୁଭେଚ୍ଛା ସହ ପ୍ରେରଣା ଦିଅନ୍ତି । ଦୀର୍ଘ କୋଡ଼ିଏ ବର୍ଷର ଶିକ୍ଷକ ଜୀବନରେ ସହକର୍ମୀ ତଥା ଶିକ୍ଷକ ବନ୍ଧୁମାନେ ମଧ୍ୟ ଭରି ଦେଇଛନ୍ତି ଅମାପ ଉତ୍ସାହ । ସମସ୍ତଙ୍କୁ ସାଧୁବାଦ ଜଣାଉଛି । ବିଶେଷ କରି ଇ-ପୁସ୍ତକ ପ୍ରକାଶନରେ ଅନେକ ସହଯୋଗ କରିଛନ୍ତି ମୋର ବଡ଼ ଭଉଣୀ ଅପର୍ଣ୍ଣା, ସାନ ଭାଇ କାହ୍ନୁ, ସାନଭଉଣୀ ମାମୁନି, ଅଭୀପ୍ସା, ଅର୍ପିତା, ସୁଭଦ୍ରା ତଥା କନ୍ୟା ଝୁମ୍ପା, ସ୍ନେହା, ଶ୍ରଦ୍ଧା ଓ ପ୍ରଜ୍ଞା । ଅବସରପ୍ରାପ୍ତ ସଂସ୍କୃତ ଶିକ୍ଷକ ସୁଦୂର ପୁରୀ ଜିଲ୍ଲାର କକେଇ ପ୍ରମୋଦ କୁମାର ଶତପଥୀଙ୍କର ଅଭିପ୍ରେରଣା ମୋ' ପାଇଁ ନିଶ୍ଚୟ ମାର୍ଗ ଦର୍ଶକ ହୋଇଛି । ପରିଶେଷରେ ଏତିକି କହି ରଖିବି ଏ 'ବାରମାସୀ' ଆପଣଙ୍କ ମନକୁ ଛୁଉଁ ନ ଛୁଉଁ ଆପଣଙ୍କର ସଦିଚ୍ଛା, ଭଲପାଇବା ଯଦି ମୋ' ସହ ରହେ ଆଗାମୀ ଦିନରେ ଅନେକ 'ବାରମାସୀ' ନିଶ୍ଚୟ ଆତ୍ମପ୍ରକାଶ କରିବେ ।

ସମସ୍ତ ଗୁରୁଜନଙ୍କ ନିକଟରେ ମଥାନତ ସମ୍ମାନ ଓ ଲଘୁଜନଙ୍କୁ ମୋର ସ୍ନେହାଲିଙ୍ଗନ ଜଣାଇ ଆତ୍ମକଥନରେ ବିରାମ ଦେଉଛି ।

ମୋତେ ଭଲ ଲାଗେ.........

ଶିଶୁ ସଦନରେ ଥିବା ପିଲାମାନଙ୍କର ହସ........

ବୃଦ୍ଧା ଆଶ୍ରମରେ ଥିବା ସମାଜର ଅବହେଳିତ ବୃଦ୍ଧ ବୃଦ୍ଧାଙ୍କ ସହ ସମୟ ଅତିବାହିତ କରିବାରେ.......

ଦେଶ ସେବାରେ ନିଜକୁ ନିୟୋଜିତ କରିବାରେ.......

ସମାଜର କଲ୍ୟାଣ ସାଧନ ନିମନ୍ତେ ଚେଷ୍ଟା କରିବାରେ.........

(ସମାଜ କଲ୍ୟାଣ ଶିକ୍ଷକ ସଂଗଠନ, ଧର୍ମଶାଳାର ପ୍ରତିଷ୍ଠା ସଭ୍ୟ ଭାବରେ ସଂଗଠନ ଜରିଆରେ ରକ୍ତଦାନ ଶିବିର ଆୟୋଜନ, ଅଭାବ ଅନଟନରେ ଥିବା ବ୍ୟକ୍ତି ବିଶେଷଙ୍କ ପାଇଁ ଯଥା ସମ୍ଭବ ସାହାଯ୍ୟ ବ୍ୟବସ୍ଥା । ଜାତୀୟ ବିପତ୍ତି ସମୟରେ ଆବଶ୍ୟକୀୟ ସହଯୋଗ ଇତ୍ୟାଦି ।)

ବିନୀତ

ଲେଖକ

# କିଏ କ'ଣ କହନ୍ତି

## ଅଜାଙ୍କ ଆଶୀର୍ବଚନ:

ନାତି ଅରବିନ୍ଦ। କାଲି ସକାଳେ ଏଡ଼ିକିଟେ ହୋଇଥିଲା। ଆଜି ପାଠ ପଢ଼ି ଶିକ୍ଷକ ହୋଇଛି। ମୋର ପ୍ରିୟ ନାତି। ସମୟ ପାଇଲେ ମୋ' ସହ ଦୁଃଖସୁଖ ହୁଏ। ମୋ' ସହ ସମାଜ ସେବାରେ ସାମିଲ ହୁଏ। ମଝିରେ ମଝିରେ ସେ ତା'ର ନିଜ ଲେଖା କବିତା ଶୁଣାଏ। ବହୁତ କବିତା ସେ ଲେଖିଛି। ତା' ଲେଖାଗୁଡ଼ିକ ମୋ' ମନକୁ ଛୁଏଁ। ସଂପୂର୍ଣ୍ଣ ଚାପମୁକ୍ତ ଓ ବାସ୍ତବ ଲେଖା। କହୁଥିଲା ବହିଟିଏ ଛାପିବ ବୋଲି। ବହୁତ ଦିନ ପରେ ଶୁଣିଲି ତା'ର କବିତା ବହି 'ବାରମାସୀ' ପ୍ରକାଶିତ ହେବ। ଖୁସି ଲାଗିଲା। ଆଶୀର୍ବାଦ କରୁଛି ତାକୁ, ସେ ଏମିତି ଲେଖୁଥାଉ। ତା'ର କଲମ ବନ୍ଦ ନହେଉ। ମାଆ ଦୁର୍ଗାଙ୍କ ନିକଟରେ ତା'ର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି।

କୃଷକ ଲକ୍ଷ୍ମଣ ଦାଶ
(ଆଇ.ସି.ଏସ୍)
ପ୍ରତିଷ୍ଠାତା, ମୁଖ୍ୟ ସେନାଧକ୍ଷ ଆଜାଦୀ ଠେଙ୍ଗା ବାହିନୀ,
ଇଣ୍ଡିଆନ କମ୍ୟୁନିଟି ପୋଲିସ

---

## ଆଶୀର୍ବଚନ:

ସୁନ୍ଦର ପ୍ରୟାସ। ଘୁଣଖିଆ ସମାଜରେ ଅନେକ କୁସଂସ୍କାର ଜନ ଜୀବନକୁ ଆବୋରି ବସିଛି। ସରଳ ମଣିଷ ବଂଚିବାର ରାହା ଖୋଜିଲାବେଳେ କବିର ଲେଖନୀ ଚେଇଁଉଠେ। ଚରୈବେତି ନ୍ୟାୟରେ ଶବ୍ଦମାନେ ଜୀବନ୍ୟାସ ପାଇ ସଜୀବ ହୁଅନ୍ତି। ପବନର ମଧୁମୟ ହିଲ୍ଲୋଳରେ ବିଛେଇ ହୋଇଥିବା ଶବ୍ଦମାନେ ବାଟ ଖୋଜୁଥିବା ପଥିକି ପାଖରେ ହାତ ବଢ଼ାଇ ବାଟ ଦେଖାନ୍ତି। ସେହି ବାଟ ଆଗକୁ ଆଗେଇବାର ସାହାରା ହୁଅନ୍ତି। ଭାବ ଭାବନାରୁ ଗଳୁରି ଆସିଥିବା, ଲେଖନୀରୁ ଝରି ଆସୁଥିବା ଶବ୍ଦ ବ୍ରହ୍ମମାନେ ସଜଫୁଟା ଫୁଲ ପରି ମହକି ଉଠନ୍ତୁ। ଲେଖନୀ ଋଦ୍ଧିମନ୍ତ ହେଉ। ଥକାହୀନ ହୋଇ ଝରଣା କୁଳୁକୁଳୁ ଗତି ପରି ଏଇମିତି ଫୁଟିଉଠୁ ଶବ୍ଦର ବର୍ଣ୍ଣାଳୀ। ଆମୋଦିତ କରୁଥାଉ ପ୍ରତିଟି ହୃଦ କନ୍ଦରକୁ। କବିର ଜୟ ହେଉ।

ଶୁଭେଚ୍ଛା ସହ କକେଇ
ଶ୍ରୀ ପ୍ରମୋଦ କୁମାର ଶତପଥୀ
ଅବସର ପ୍ରାପ୍ତ ସଂସ୍କୃତ ଶିକ୍ଷକ, ପୁବାଶାସନ, ପୁରୀ

## ମାଆର ଆଶୀର୍ବାଦ :

ପୁଅ ମୋର । ବେଳେବେଳେ ଡେରି ରାତିଯାଏ କ'ଣ ଗୋଟିଏ ଲେଖି ପକାଉଥାଏ । ବହିଟିଏ ଖେଳାଉ ଥାଏ । କହିଲେ ବି ଶୁଣେନି । କହେ ମୋର କାମ ଅଛି । ସରିଲେ ଶୋଇବି । ତା'ର ଲେଖା ଲେଖି କରିବା ଗୋଟେ ଅଭ୍ୟାସ । ସେ ଯେତେବେଳେ ଯାହା ଲେଖେ ମୋତେ ଦେଖାଏ । ମୋର ଆଖି ଭଲ ଥିଲାବେଳେ ମୁଁ ପଢ଼ି ପାରୁଥିଲି । ଖୁସି ଲାଗୁଥିଲା । ଏବେ ପଢ଼ିବାକୁ ଚେଷ୍ଟା କରୁଛି, ଯଦି ନ ପଢ଼ି ପାରିଲି ସେ ମୋତେ ପଢ଼ି ଶୁଣାଉଛି । ଗୋଟିଏ ବହି ଛାପିବା କଥା ଶୁଣି ଖୁସି ଲାଗିଲା । ଗୁରୁଜନମାନେ ତାକୁ ଆଶୀର୍ବାଦ କରନ୍ତୁ । ସେ ସୁସ୍ଥ ରହୁ । ଲେଖାଲେଖି କରୁ । କଲ୍ୟାଣ ହେଉ ତା'ର ।

ମାତାଜୀ ଦାଶ

---

## ଶୁଭ କାମନା ସହ ଆଶିଷ:

ଜୀବନ କ୍ଷଣଭଂଗୁର ମାତ୍ର ସାହିତ୍ୟ ସାଧନା, ତା'ର କୃତି କାଳଜୟୀ, ବିଚିତ୍ର ବର୍ଣ୍ଣା ପ୍ରକୃତି ରାଣୀ ବାରମାସରେ ତେର ପରବ ଖଞ୍ଜି ଖାଲି ଚିତ୍ତ ବିନୋଦନ କରି ନଥାଏ ବରଂ ତା'ର ରୀତି ନୀତି, ପ୍ରଥା ପରମ୍ପରା ଦ୍ୱାରା ଆମ ସମାଜକୁ ପରିପୁଷ୍ଟ କରିଥାଏ ।

ଠିକ୍ ସେମିତି ଜଣେ ସାରସ୍ୱତ ସାଧକ, ଶିକ୍ଷକ, ସମାଜସେବୀ ଶ୍ରୀ ଅରବିନ୍ଦ ଦାଶଙ୍କ ଲେଖନୀ ପ୍ରସୂତ ପାଣ୍ଡୁଲିପି ଆଜି ଆତ୍ମପ୍ରକାଶ କରିବାକୁ ଯାଉଛି କବିତା ସଂକଳନ 'ବାରମାସୀ' ପୁସ୍ତକ ରୂପେ । ଆଶା ରଖିବି ପୁସ୍ତକଟି ସବୁ ବର୍ଗର ପାଠକଙ୍କୁ କିଛି କିଛି ସଂଦେଶ ବିତରଣ ସହ ନିଜର ସ୍ୱତନ୍ତ୍ର ପରିଚୟ ବହନ କରୁ । ପୁସ୍ତକଟି ଦୀର୍ଘଜୀବୀ ହେବା ସହ ପାଠକୀୟ ଆଦୃତି ଲାଭ କରୁ । ସମାଜର ହିତ ସାଧନ କରୁ । ଏତିକି କାମନା ସହ ସମାଜ କଲ୍ୟାଣ ଶିକ୍ଷକ ସଂଗଠନ ତରଫରୁ ମୁଁ ଶ୍ରୀ ଦାଶଙ୍କୁ ଶୁଭେଚ୍ଛା ସହ ଶ୍ରଦ୍ଧା ସୁମନ ଅର୍ପଣ ପୂର୍ବକ ଆଶୀର୍ବାଦ ଦେଉଛି ।

ନୀଳିମା ମହାନ୍ତି
ବରିଷ୍ଠ ସଦସ୍ୟା
ସମାଜ କଲ୍ୟାଣ ଶିକ୍ଷକ ସଂଗଠନ

## ପ୍ରେରଣା ଆଲୋକ:

ଶିକ୍ଷକ କବି ଅରବିନ୍ଦ ଦାଶ (ଭଣଜା)ଙ୍କ କରକମଳ କୃତ 'ବାରମାସୀ' ପୁସ୍ତକର ରଚନାଗୁଡ଼ିକରେ ମାତାପିତା, ଶିଶୁ, ଯୁବପିଢ଼ିଙ୍କ ପ୍ରତି ପ୍ରେରଣା ଓ ଦେଶାତ୍ମବୋଧକ କବିତାଗୁଡ଼ିକ ପଦ୍ମ କଢ଼ି ପରି ସୁଶୋଭିତ, ମନଲୋଭା ଅଳଙ୍କାରରେ ବିମୋହିତ ଓ ମହାପ୍ରଭୁଙ୍କ ଅବଢ଼ାର ତୃପ୍ତି ଅନୁଭବ କରିବା ସଂଗେ ସଂଗେ ଆଶୀର୍ବାଦ ଗୋଲାପର ମାଳା କାମନା କରୁଛି ।

ଅକ୍ଷୟ କୁମାର ପାଣିଗ୍ରାହୀ(ମାମୁ)
ଆଇନଜୀବୀ
ଦୁର୍ଗାପୁର, ଯାଜପୁର

---

## ଖୁସିର ଅନ୍ୟ ଏକ ଦିଗରୁ ଶୁଭ କାମନାଟିଏ:

ଆମର ବଡ଼ ଭାଇ, ଶିକ୍ଷକ, ସମାଜସେବୀ ଓ କବି ଶ୍ରୀ ଅରବିନ୍ଦ ଦାଶ । ଆମମାନଙ୍କର ସେ ମାର୍ଗଦର୍ଶକ ତଥା ପ୍ରେରଣାର ଆଧାର । ତାଙ୍କର ମର୍ମସ୍ପର୍ଶୀ, ବାସ୍ତବଧର୍ମୀ କବିତାଗୁଡ଼ିକୁ ଆମେ ଅନେକଥର ଶୁଣିବାର ସୁଯୋଗ ପାଇଛୁ । ଏ ଡିଜିଟାଲ ଯୁଗରେ ମୋବାଇଲ ମାଧ୍ୟମରେ ମଧ୍ୟ ତାଙ୍କର ଲେଖାଗୁଡ଼ିକୁ ପଢ଼ିବାର ସୁଯୋଗ ପାଉଛୁ । ଆମମାନଙ୍କର ଇଚ୍ଛା, ଆଗ୍ରହ ତଥା ସ୍ୱପ୍ନ ଥିଲା ତାଙ୍କର ଲେଖାଗୁଡ଼ିକ ନେଇ ବହିଟିଏ ମୁଦ୍ରିତ ହେଉ । ଆଜି ତାହା ବାସ୍ତବ ହୋଇଛି 'ବାରମାସୀ' ରୂପରେ । 'ବାରମାସୀ'ର ମଜା ସମାଜରେ ବାଣ୍ଟି ହୋଇଯାଉ । ସବୁ ବୟସର ଲୋକେ ଆନନ୍ଦିତ ହୁଅନ୍ତୁ । ସେହି ଆନନ୍ଦର ଏକ ପ୍ରତିଧାର ଆଶୀର୍ବାଦର ରୂପ ନେଇ ଭାଇଙ୍କୁ ଆମର ସୁସ୍ଥ, ସବଳ ରଖୁ । ତାଙ୍କର ଲେଖନୀ ମୁନ ଅମର ହେଉ । ବାରମାସୀ ଦୀର୍ଘଜୀବୀ ହେଉ । ଆତ୍ମପ୍ରକାଶ କାଳୀନ ଅନେକ ଅନେକ ଶୁଭକାମନା ଜଣାଉଛୁ ।

ଆଶୀର୍ବାଦ ଲିପ୍ସୁ
ସମସ୍ତ ସାନ ସାନ ଭାଇ ଭଉଣୀ





- ନାରାୟଣ ଦରଶନ- ୧୧
- ଜଗତ ଜନନୀ ମା' ଦୁର୍ଗା- ୧୨
- ସ୍ରଷ୍ଟାଙ୍କୁ ପଦେ- ୧୪
- ଶକ୍ତି- ୧୫
- ତୁମେ ମୋ' ମାଲିକ ମୁଁ ତୁମ ଦାସ- ୧୬
- କାଳିଆ ନନା- ୧୭
- ଦଶଦିଗପାଳ- ୧୮
- ଜ୍ୱର- ୨୦
- କି ଇଚ୍ଛା ତୁମର କୁହ- ୨୧
- ଗଣତନ୍ତ୍ର- ୨୩
- ଆୟୋଜକ- ୨୫
- ହେ ଭାରତ ମାତା- ୨୬
- କଳାର ପଥେ- ୨୮
- ଏହି ମୋ' ଦେଶ-୩୦
- ଗିରିରାଜର ଆହ୍ୱାନ-୩୨
- ଆସ ନେତାଜୀ-୩୪
- ଅଭିଳାଷ-୩୬
- ଏହି ସେ ଉତ୍କଳ-୩୮
- ମାଆ ପାଇଁ ପଦେ-୩୯
- ପାଠ ପଢ଼ିବି ମଣିଷ ହେବି-୪୧
- ଆଜିର ନାରୀ-୪୨
- ମାଆର ଆହ୍ୱାନ-୪୪
- ସେହି ମୋର ମାଆଟି-୪୬
- ଶପଥ-୪୮
- ପବିତ୍ର ଦିବସ: ଗୁରୁ ଦିବସ-୪୯
- ଧନ୍ୟ ତୁ ଭୁବନେଶ୍ୱର-୫୦
- ନିଶା-୫୨
- ନଳିନୀ-୫୩
- କ'ଣ ଦରକାର ?-୫୪
- ନୂଆରାସ୍ତା-୫୫
- ସଂଜଦୀପ-୫୬
- ଉଷାମନ୍ତ୍ର-୫୮
- ଇଚ୍ଛା ହୁଏ ମୋର ଆଜି-୫୯
- ଶ୍ରଦ୍ଧା-୬୧
- ବାପା-୬୩
- କଲମ ଚାଷ-୬୪
- ପୁଲୱାମାରୁ ଚିଠିଟିଏ-୬୫
- ନିଜ ଟେକ ନିଜେ ରଖ-୬୭
- ଅମର ଜୀବନ -୬୯
- ଶୁଭମୟ ସକାଳ-୭୧
- ବିଶ୍ୱବାସୀଙ୍କୁ ଆହ୍ୱାନ-୭୨

# ନାରାୟଣ ଦରଶନ

ବାଲ୍ୟ କାଳୁ ପିତୃସ୍କନ୍ଧେ    ବସି ଆରାମରେ
ଧରୁଥିଲି ପତାକା ତୋ'    ବିଗ୍ରହ ଉପରେ ।
କଳା ମଚମଚ ରୂପ    ମୁଗୁନି ପଥର
ସନ୍ତୋଷ ମିଳଇ ଦେଖି    ଦିବ୍ୟ ରୂପ ତୋ'ର ।
ଜଳକେଳି କରୁଥିଲୁ    ବିପ୍ର ମେଳେ କେତେ
ଆଜି କିମ୍ବା ଚୋର ପରି    ମନ ମୋ'ର ଚିନ୍ତେ ।
ତୋହର ସର୍ଜନା କାଳେ    ଜୀବାଣୁ ଭୂତାଣୁ
ସୂକ୍ଷ୍ମ ସ୍ଥୂଳ କେତେ    ପୁଣି ଅଣୁ ପରମାଣୁ ।
ସାମାନ୍ୟ କରୋନା ଭୟେ    ଚୋର ପରି ଉଠି
ରାତି ଅଧେ ଯାଉ ପୁଣି    ଉର୍ଦ୍ଧ୍ୱେ କରି ପିଠି ।
ନିଶୀଥ କାଳିମା ସିନା    କରୋନା ପାଇଁକା
ଦରଶନ କରିବି ମୁଁ    କଥା ଦେଲି ପକ୍କା ।
ଅଦଡ଼ ହାତରେ ଧରି    କରିଥା'ନ୍ତି କେଳି
ଇଚ୍ଛା ଥିଲା ଆହେ ମୋର    ନିଧନ ସଙ୍ଖାଳି ।
ବସି ମୋ'ର ଅଗଣାରେ    ଦେଖି ବି ତୋ' ରୂପ
କିଛି କରି ପାରିବନି    କରୋନା ପ୍ରକୋପ ।
ବିଶ୍ୱରୂପ ଦେଖି ଥିଲା    ଅର୍ଜୁନ ସମରେ
ଦେଖି ବି ମୁଁ ତୋ'ର ରୂପ    ବସି ଥାଇ ଘରେ ।
ଧୋଇ ଦେବି ତୋ'ର ପାଦ    ଅଶ୍ରୁଜଳ ଢାଳି
ଏତିକି ସୁଦୟା କର    ପ୍ରଭୁ ବନମାଳୀ ॥



(* ସିଂହାପୁର ମଧୁତୀର୍ଥଶାୟୀ ନାରାୟଣଙ୍କ ଲୀଳାଆଧାରେ)

# ଜଗତ ଜନନୀ ମା’ ଦୁର୍ଗା

କଳକଳ ନିନାଦିନୀ ପୁଣ୍ୟତୋୟା ବ୍ରାହ୍ମଣୀ
କୂଳେ ବସିଅଛି ମାଆ ଜଗତ ଜନନୀ ।
ସମ୍ମୁଖରେ ଲମ୍ବିଅଛି ଦୀର୍ଘ ରାଜପଥ
ଦୁର୍ଗାପୁର ଗାଁ’ରେ ମାଆ ଅଟେ ତୋ’ର ପୀଠ ।
ପଥେ ଗଲାବେଳେ ଭକ୍ତେ ଉଠାନ୍ତି ମା’ ହାତ
ବିପଦେ ଡାକନ୍ତି ଜନେ ରକ୍ଷାକର ମାତ ।
ବେଢ଼ା ତୋ’ ସୁନ୍ଦର ମାଆ ଅପୂର୍ବ ମନ୍ଦିର
ସାଥେ ପୂଜା ପାଆନ୍ତି ମାଆ ପ୍ରଭୁ ମହେଶ୍ୱର
ଶକ୍ତିମୟୀ ବୋଲି ମାଆ ଜାଣନ୍ତି ଜଗତେ
ତୋ’ର ଶକ୍ତି କଳିବାକୁ ନାହିଁକେ ମରତେ ।
ତୋ’ର ଶକ୍ତି ମାଆ ପରା ଦେବେ ଅଗୋଚର
ତାହା କାହୁଁ ଜାଣିବ ବା ଅଧମ ଏ ନର ।
ଏ ସୃଷ୍ଟି ଚାଲେ ମାଆ ତୋହରି ଆଜ୍ଞାରେ
ଅବିରତ ସମୀରଣ ନୀର ବହେ ନଦୀରେ ।
କରୁଣା ବରଷୁ ବୋଲି ତୁ କୃପାମୟୀ
ତୋ’ର କୃପା ବିନୁ ସୃଷ୍ଟି ଅସ୍ଥିର ହୁଅଇ ।

ରକତ ମନ୍ଦାର ମାଆ ନିତ୍ୟ ତୋ'ର ପ୍ରିୟ
ଆଶିଷ ଦେବୁ ତୁ ମାଆ ଦେବୁ ତୁ ଅଭୟ ।
କମଳ ଯେ ଶୋଭା ପାଏ ତୋ'ର ପାଦପଦ୍ମେ
ଶକ୍ତି ଦେ ପୂଜିବାକୁ ଜନମେ ଜନମେ ।
ଭକତ ଭକ୍ତିରେ ମାଆ ହୋଇଥାଉ ପ୍ରୀତ
ଭକତ ଡୋରିରେ ବନ୍ଧା ତୁ ଆଦିମାତ ।
ଶରତେ ପାଉ ତୁ ପୂଜା ମହା ଅଷ୍ଟମୀରେ
କମ୍ପିଉଠେ ଏ ଧରଣୀ ତୋହରି ପୂଜାରେ ।
ଶକ୍ତି ପ୍ରଦାୟିନୀ ବୋଲି ଶକତି ମାଗୁଛି ତୋତେ
ଭକ୍ତି ପ୍ରଦାୟିନୀ ତୁ ଭକ୍ତି ଦେ ମୋ'ର ଚିତ୍ତେ ।
ହୃଦୟେ ରଖିଛି ମାଆ ଗୋଟିଏ କମଳ
ଧୋଇବି ଚରଣ ତୋ'ର ବୁହାଇ ନୟନ ଜଳ ।
ପଣତରେ ପୋଛି ଦେବି ମାଆ ତୋ'ର ପାଦ
ଜୀବନ ଦୀପରେ ମାଆ ତେଜି ଘୃତ ନିଦ ।
କାନ୍ଦି କାନ୍ଦି ଶୁଖାଇବି ମୋ' ନୟନ ନୀର
କରୁଣା ବିତରିଯାଉ ନଶୁଭେ କି ଗୀର ॥



# ସ୍ରଷ୍ଟାଙ୍କୁ ପଦେ

ହେ ସୃଷ୍ଟିକର୍ତ୍ତା !
ବିଚିତ୍ର ଲାଗେ ଦେଖି ତୁମ ଏ ସର୍ଜନା
ଆହୁରି ବିଚିତ୍ର ତୁମ କାବ୍ୟ ସଂରଚନା ।
ମହାକବି ଅଟ ତୁମେ ଏ ପୃଥ୍ୱୀ କାବ୍ୟର
ଉପମା ଅଳଙ୍କାରେ ନିତ୍ୟ ଭରପୂର ।
ଏ ସୁନ୍ଦର ଚିତ୍ରପଟେ ତୁମେ ଚିତ୍ରକର
କଳାରେ ନିପୁଣ ସତେ ମହା କଳାକାର ।
ତୁମରି ତୂଳୀରେ ହୁଏ ପରାଚୀ ସୁନ୍ଦର
ପ୍ରାତଃ କାଳେ ଉଦେ ଯେବେ ପ୍ରଭୁ ଦିବାକର ।
ତୁମରି ଆଦେଶେ ସାୟଂ କାଳେ ବାରୁଣୀ
ମଣ୍ଡଇ ନିଜକୁ କରି ଶୋଭାର ରାଣୀ ।
ତୁମର ଏ ସୃଷ୍ଟି ଯଦି ଏତେ ଲାଗେ ସୁନ୍ଦର
ଭାବୁଛି ତୁମ ରୂପ କେଡ଼େ ମନୋହର ।
ପୋଛି ଦିଅନ୍ତ ଯଦି ମନୁ ମୋ' ସନ୍ଦେହ
ପ୍ରଶମିତ ହୁଅନ୍ତା ମୋ' ଆଖିର ଲୁହ ।
ପୂର୍ଣ୍ଣଚ୍ଛେଦ ପଡ଼ନ୍ତା ମୋ' ଛାତିର କୋହରେ
ଦେଖିନେଲେ ତୁମର ସେ ମଧୁର ରୂପ ଥରେ ।
ଏ ଜୀବନେ ଯଦି ଦେଖିନହେଲା ତୁମ ରୂପକୁ
ଆଉ କି ଭରସା ଅଛି ଆରଜନମକୁ ?
ତୁମେ ହୁଅ ଚିତ୍ରକର ଅବା କଳାକାର
ଦେଖାଦିଅ ଥରେ ମାତ୍ର ଆହେ ଜଗତ ଈଶ୍ୱର ।



# ଶକ୍ତି

ବେଦ କହେ
ସୂର୍ଯ୍ୟଙ୍କ ଜ୍ୟୋତିରେ ଅଛି ଶକ୍ତି
ବିମଳ ଜ୍ୟୋତ୍ସ୍ନାରେ ବି ଅଛି ଶକ୍ତି ।
ଶକ୍ତି ବି ଅଛି ଜଳର ତରଳତାରେ,
ଶକ୍ତି ବି ଅଛି ଅଗ୍ନିର ଉତ୍ତାପରେ ।
ବାୟୁର ପ୍ରବାହେ ଭରା ଶକ୍ତି
ନଭର ବ୍ୟାପକତାରେ ବି ଅଛି ଶକ୍ତି ।
ଶକ୍ତିପୂର୍ଣ୍ଣ ଏ ଜୀବର ଚେତନା
ଅଙ୍କୁରିତ ହୁଏ ବୀଜ ଶକ୍ତିରେ ସିନା ।
ପୁଷ୍ପର ସୌନ୍ଦର୍ଯ୍ୟେ ଅଛି ଶକ୍ତିର ଭରା
ମଧୁର ମାଧୁର୍ଯ୍ୟେ ମଧୁପ ମନୋହରା ।
ସୃଷ୍ଟିର ପ୍ରାଚୁର୍ଯ୍ୟେ ଅଛି ଯେଉଁ ଶକ୍ତି
କଳିବାକୁ ଦରକାର ଅଛି ଦିବ୍ୟମତି ।
ଦୁର୍ଗା ପରା ସେହି ଶକ୍ତି ଦୁର୍ଗତି ବେଳରେ
ଦୋହଲାଇ ଦିଏ ସୃଷ୍ଟି ପ୍ରଳୟ ହୁଙ୍କାରେ ।
ସେହି ଶକ୍ତି ଲକ୍ଷ୍ମୀମାତା ଐଶ୍ୱର୍ଯ୍ୟ ଦାୟିନୀ
ସେହି ଶକ୍ତି ସରସ୍ୱତୀ ପ୍ରଜ୍ଞା ପ୍ରଦାୟିନୀ ।
ସେହି ଶକ୍ତି ମଙ୍ଗଳା ମା' ମଙ୍ଗଳ ଦାୟିନୀ
ସୃଜନ ପାଳନ ସେହି ସଂହାର କାରିଣୀ ॥



# ତୁମେ ମୋ' ମାଲିକ ମୁଁ ତୁମ ଦାସ

କିଏ କ୍ରୀତଦାସ କିଏ ବା ମାଲିକ
ବୁଝି ପାରୁନାହିଁ କିଛି,
ମରିମରି ଏଠି ଜଣେ ବଞ୍ଚିଥାଏ
ଆନ ବଞ୍ଚେ ଇଛି ଇଛି ।
ଯାହାକୁ ତୁମେ ହେ ମାଲିକ କହୁଛ
ମୋ' ପାଇଁ ସେ ଦୀନଦାସ,
ଅନ୍ୟ ଇଚ୍ଛାରେ ଚଳୁଥିଲା ସିଏ
ହୋଇଥିଲା ସେ ଅବଶ ।
ବିଶ୍ୱ ବିଜୟୀ ଆଲେକଜାଣ୍ଡାର ଯେ
ଥିଲେ ଦାସ କ୍ଷମତାର,
ସେ ସନ୍ଥ ମହାତ୍ମା ଡିଓଜିନସ ତ
ମାଲିକ ନିଜ ମନର ।
ସୁଦାମା ଦରିଦ୍ର ଅହଂକାର ଶୂନ୍ୟ
ରହିଥିଲା ଆନନ୍ଦରେ,
ମୁରଲୀଧାରୀ ଯେ ଭକତର ଦାସ
ଧାଇଁ ଥିଲେ ତା' ପଛରେ ।
ସେହି ତ ମାଲିକ ସେହି ପୁଣି ଦାସ
ଭିଆଇଛି ନିଜେ ବସି,
ଦେଖୁଛି, କିଏ ସେ କିପରି ଭାବୁଛି
ମୁରୁକି ମୁରୁକି ହସି ।
ମାଲିକ ହୁଅ ହେ ତୁମେ ପ୍ରଭୁ ମୋ'ର
କର ମୋତେ କ୍ରୀତଦାସ,
ତୁମ ଦୁଆରକୁ ଦେଖା ରାସ୍ତା, ଅଳି
କରେ ଅରବିନ୍ଦ ଦାଶ ।।



# କାଳିଆ ନନା

କିଏ ଡାକୁଅଛି କାଳିଆ ନନା ଲୋ
କିଏ ଡାକୁଥାଇ ଜଗା
କିଏ ଡାକୁଅଛି କାଳିଆ କାହ୍ନା ଲୋ
ଭକତ ପୀରତି ଲଗା ।
ବଡ଼ଠାକୁର ତ ହୁରି ପଡୁଅଛି
ଉଠୁଛି ପଡୁଛି ଦେଶ
କଳା ମଚମଚ ଦେହ ତ ତୁମର
ଭକତେ କରଇ ବଶ ।
କାଳିଆ ସାଆନ୍ତ ତୁମେ ଜଗନ୍ନାଥ
ଜଗତେ ବୋଲାଅ ବଡ଼
ସେନେହରେ ଟାଣ ତୁମେ ତ ଭକତ
ପୂରି ଉଠେ ବଡ଼ଦାଣ୍ଡ ।
ତୁମରି କରୁଣା କଣିକା ପାଇଁ ଯେ
ଭକତ ହୁଏ ପାଗଳ
ଦେଖି ଦେଲେ ତୁମ ଚକାନୟନକୁ
ଆଖି ହୁଏ ଛଳଛଳ ।
ସାଗର କୂଳରେ ଦେଉଳ ତୁମର
ଲାଗୁଥାଏ ଭାରି ଭଲ
ଶ୍ରୀକ୍ଷେତ୍ର ବିହାରୀ ପ୍ରଭୁ ଜଗନ୍ନାଥ
କାହିଁ କର କଳବଳ ।
ନେଇଯାଅ ତୁମେ ନିଜ ପାଖେ ପ୍ରଭୁ
ବୁଜି ଦିଏ ମୁହିଁ ଆଖି
କାନ୍ଦି କାନ୍ଦି ମୁହିଁ ଥକି ପଡ଼ିଲିଣି
ନୀଳଚକ୍ର ଦେଖି ଦେଖି ॥



# ଦଶଦିଗପାଳ

ପୂର୍ବ ଦିଗପାଳ ଆହେ ଦେବରାଜ
ଘେନ ମୋ' ପ୍ରଣତି ବାରେ
ବଜ୍ର ଧରି କରେ ନାଶ କର ପ୍ରଭୁ
ଯେ ପାପ ଅଛି ଅନ୍ତରେ ।
ହେ ବରୁଣ ଦେବ ପଶ୍ଚିମେ ରାଜୁତି
କରୁଥାଅ ତୁମେ ସଦା
ଅସ୍ତାଚଳ ମୋ'ର କର ହେ ଉଜ୍ଜ୍ୱଳ
ମାଗୁଛି ପଦେ ସର୍ବଦା ।
ପ୍ରଭୁ ଧନ ପତି ଉତ୍ତରେ ତ ଅଛ
ଢାଳୁଥାଅ ଧନରାଶି
ଅଭାବ ନ ରହୁ କାହାର ଜୀବନେ
ମାଗେ ତୁମେ ଦିବାନିଶି ।
ଆହେ ଧର୍ମରାଜ ଦକ୍ଷିଣେ ବିରାଜ
ମାଗେ ତୁମ ଦରଶନ
ଆଉ ନାହିଁ ଇଚ୍ଛା ଏ ଭବ ସଂସାରେ
କାଳ ରଜ୍ଜୁ ବେଗେ ଆଣ ।
ପୂରୁବ ଦକ୍ଷିଣେ ଅଗ୍ନି ଦେବ ତୁମେ
ଶାନ୍ତ ମନ ଛାଡ଼ିଦିଅ
ଏ ଜଗତେ ଯେତେ ପାପ ଅଛି ସତେ
ରୁଦ୍ର ରୂପେ ଜାଳିଦିଅ ।

ଦକ୍ଷିଣ ପଶ୍ଚିମେ ନିରୁତ ଆପଣେ
ପାଳୁଥାଅ ମନ ଦେଇ
ମୁହିଁ ଦୀନହୀନ ମୂଢ଼ ଅକିଞ୍ଚନ
ସେବେ ତୁମ ପାଦ ଦୁଇ ।
ପଶ୍ଚିମ ଉତ୍ତରେ ବାୟୁଦେବ ତୁମ
ନିତ୍ୟ ରାଜେ ରାଜଧାନୀ
ଦୁର୍ଭାର ବାସନା ନେଇ ଯାଅ ଦୂରେ
ଶାନ୍ତି ପାଉ ଏ ଧରଣୀ ।
ଉତ୍ତର ପୂରୁବ ଅଇଶାନ୍ୟ ଦିଗ
ଦିଗପାଳ ପ୍ରଭୁ ଈଶ
ଏ ସାରା ଭୁବନୁ ଯେତେକ ଅନ୍ୟାୟ
ସମୂଳେ କର ବିନାଶ ।
ଆହେ ପ୍ରଜାପତି ଉର୍ଦ୍ଧ୍ୱେ ବିରାଜିଛ
ଆଶୀର୍ବାଦ ଦିଅ ମୋତେ
ତୁମରି ସୃଷ୍ଟିରେ ସବୁରି ପ୍ରାଣରେ
ତୁମ ଦେଖା ପାଏ ସତେ ।
ଅଧଃ ଦିଗପାଳ ଅନନ୍ତ ଠାକୁର
ଧରିଛ ପୃଥିବୀ ମାଆ
ନିରୀହ ପ୍ରାଣକୁ ଚାହିଁ ଦେଇ ଟିକେ
କରିଦିଅ ତୁମେ ଆହା ॥



# ଜ୍ୱର

ସ୍ନାନ ପୂର୍ଣ୍ଣିମାରେ ମୋ' କାଳିଆ ରାଜା
ସିନାନ କରିଛି କେତେ,
ଗଂଗା ଯମୁନାର ଥଣ୍ଡା ଜଳ ଲାଗି
ଶରୀର ତାହାର ତାତେ ।
ବରଷକେ ଥରେ ସିନାନ କରୁଛି
ତଥାପି ହେଉଛି ଜ୍ୱର
ସେ ମାୟା ପୁରୁଷ ତା'ର ମାୟାକୁ ଯେ
କିପରି ବୁଝିବ ନର ?
ଆଦରି ନେଲା ସେ ଅନ୍ଧାରି ଗମ୍ଭୀରା
ଖାଇବ ପଥି ଔଷଧ
ଭଲ ହୋଇଯିବ ମାତ୍ର କେଇଦିନେ
ରହିବନି ତା'ର ଖେଦ ।
ରଥ ଚଢ଼ି ସିଏ ଯିବ ବୁଲିବାକୁ
ମାଉସୀମା'ର ଘରକୁ
ଭାଇ ଭଉଣୀଙ୍କୁ ସାଥେ ନେଇଯିବ
ନୀଳାଚଳେ ଛାଡ଼ି ମା'କୁ ।
ଫିଟାଇବ ସିନା ଲକଡ଼ାଉନଟା
ନିଜପାଇଁ ନିଜେ ସିଏ
ଏ ସାରା ପୃଥିବୀ ଲକଡ଼ାଉନଟା
ଫିଟାଇବ ପୁଣି କିଏ ?
ଭୂତାଣୁ କବଳେ ସଂସାର ଉଚ୍ଛନ୍ନ
କାଳିଆ ନର ବିକଳ
ଗଜ କାନ ଫେଡ଼ି ଶୁଣି ଦେ ମୋ' ରାଜା
ରକ୍ଷା କର ନର କୁଳ ॥



# କି ଇଚ୍ଛା ତୁମର କୁହ

କି ଇଚ୍ଛା ତୁମର ଟିକେ କହିବ କି
ଆହେ ମୋ'ର ରାମ ଲାଲା,
ଆଜି ପରା ତୁମ ଜନମ ନକ୍ଷତ୍ର
ଦେଖି କି ଯାଆନ୍ତ ଭଲା ।
କିପରି ଅଛି ଏ ମାଆ ମାତୃଭୂମି
କିପରି ସନ୍ତାନ ତୁମ,
ଜଗତ ପାଳକ ବୋଲାଉଛ ତୁମେ
କୌଶଲ୍ୟା ନନ୍ଦନ ରାମ ।
କରୋନା ବେମାରି କିପରି ଗ୍ରାସିଛି
ସମସ୍ତ ସନ୍ତାନ ବନ୍ଦୀ,
ଉତ୍ପାତ ହେଉଛି ମାନବ ସମାଜ
ହଜିଲାଣି ତା'ର ବୁଦ୍ଧି ।
ବିକଳେ ଡାକୁଛି ସନ୍ତାନ ତୁମର
କି ଇଚ୍ଛା ତୁମର କୁହ,
କେତେ କଷ୍ଟ ଆଉ ପାଇ ଚାଲିଥିବ
ବୁହାଇ ତାତିଲା ଲୁହ ।
ତୁମେ ଆସିଗଲେ ତୁମ ହନୁମନ୍ତ
କରିବେନି ଜମା ଡେରି,
ତୁମ ନାମ ଧରି ରୁଦ୍ର ରୂପ ଧରି
ହଟାଇ ଦେବେ ବେମାରୀ ।
ତୁମ ନାମ ପ୍ରଭୁ ଆଜି ଦେଶସାରା
ହୋଇଥାନ୍ତା ନିନାଦିତ,
ଗଗନ ପବନ ହୋଇ ରାମମୟ
ଶାନ୍ତି ପାଇଥାଆନ୍ତା ଭକ୍ତ ।

କୁରୁକ୍ଷେତ୍ରେ ପରା ତୁମେ ଦେଇଥିଲ
ଫାଲ୍‌ଗୁନେ ଗୀତାଜ୍ଞାନ,
ଧର୍ମ ଅବକ୍ଷୟେ ଏ ଧରା ପୃଷ୍ଠରେ
କରିଥା ଅବତରଣ ।
ହୋଇନି କି ବେଳ ଆହେ ରାମଲାଲା
କୁହ ପ୍ରଭୁ ଆମେ କୁହ,
ଏହି ଘଡ଼ି ସନ୍ଧି ବିପର୍ଯ୍ୟୟ ବେଳେ
କି ଇଚ୍ଛା ତୁମର କୁହ ।
କାନ୍ଦନ୍ତି ଜନନୀ କାନ୍ଦନ୍ତି ସନ୍ତାନେ
ଆହେ ପ୍ରଭୁ ରଘୁବୀର,
ପବିତ୍ର ଦିବସେ ଓହ୍ଲାଇ ପୁନଶ୍ଚ
ଧରାପୃଷ୍ଠ ରକ୍ଷା କର ।
ଘରେ ଘରେ ଶୁଭେ ରାମ ହନୁମାନ
ସଭିଙ୍କ ଛାତିରେ କୋହ,
ସର୍ବେ ହନ୍ତସନ୍ତ ପ୍ରାଣ ଜର୍ଜରିତ
କି ଇଚ୍ଛା ତୁମର କୁହ ?



# ଗଣତନ୍ତ୍ର

ତ୍ରିରଙ୍ଗା ପତାକା ଉଡ଼େ ଫରଫର
ଆମ ଏ ଆକାଶେ ଦେଖ
ଗଣତନ୍ତ୍ର ଏଠି ଚିର ଜର୍ଜରିତ
ଶୁଖି ଯାଇଛି ତା' ମୁଖ ।
ମିଛ ଲାଗୁଅଛି ଗଣତନ୍ତ୍ର ଆଜି
ମିଛ ଲାଗୁଛି ତା' ମନ୍ତ୍ର
ଲୁଚେଇ ଦେଉଛି ଗଣତନ୍ତ୍ର କୋହ
ମିଥ୍ୟା ଡାକବାଜି ଯନ୍ତ୍ର ।
ନିଘୋଡ଼ ନିଦରେ ଏ ସୁପ୍ତ ସମାଜ
ଦୁଆର ପାଖୁଶେ ଶତ୍ରୁ
ବେଳ ଚାଲିଯିବ ଶାନ୍ତି ହଟିଯିବ
ଶୁଖିବନି ଅଶ୍ରୁ ନେତ୍ରୁ ।
ଯେନତେନ ଭାବେ ପାଳନ ହୋଇବ
ଉଡ଼ାଇ ଗଗନେ ଧ୍ୱଜା
ନିଷ୍ପେଷିତ ହୋଇ ସର୍ବସ୍ୱ ହରାଇ
ରୋଦନ କରିବେ ପ୍ରଜା ।
ଏହି କ'ଣ ଥିଲା ଆଶା ଓ ଆକାଂକ୍ଷା
ଭାରତୀ ସୁପୁତ୍ରଙ୍କର
ଭାରତ ଗଗନୁ ଏବେ ବି ଝରୁଛି
ନୟନରୁ ତାଙ୍କ ନୀର ।
ଦୁଃଖ ଲାଗୁଅଛି ଦେଖି ଏ ଅବସ୍ଥା
ମୋ' ପ୍ରିୟ ଭାରତବାସୀ
ଶୁଣିଥିଲି କାନେ ସେମାନେ ସେଦିନ
ଥିଲେ ତ ଭାରି ସାହସୀ ।

ସତ୍ୟବାଦୀ ଥିଲେ ଶାନ୍ତି ପ୍ରିୟ ଥିଲେ
କାହିଁ ଗଲା ଭାଇ ଆଜି
ସାଧୁ ସନ୍ଥ ଆଜି ନିରବୀ ଯାଆନ୍ତି
ଶାସନ କରନ୍ତି ପାଜି ।

ଧିକ୍କାର କରୁଛି ନିଜକୁ ଆଜି ମୁଁ
କିଛି କରିପାରୁନାହିଁ
ଅନୁରୋଧ ମୋ'ର ପ୍ରତି ନାଗରିକେ
ଜାଗ୍ରତ ହୁଅରେ ଭାଇ ।

ଛାତ୍ରମାନେ ଆଜି ଜ୍ଞାନ ଆହରଣେ
ବଳାନ୍ତୁ ଟିକିଏ ମନ
ସାଧୁ ସନ୍ଥ ଗଣ ଆଗେଇ କର ହେ
ଶାସନର ନିୟନ୍ତ୍ରଣ ।

ଲୋଡ଼ାଅଛି ଆଜି ସେ ଜ୍ଞାନୀ ଚାଣକ୍ୟ
ଚନ୍ଦ୍ରଗୁପ୍ତ ମହାବୀର
ତୁମରି ଭିତରୁ ବୀର ଖାରବେଳ
ଗଢ଼ା ହେବା ଦରକାର ।

ଯଦି ଦରକାର ନେଇଯାଅ ରକ୍ତ
ମୋ'ର ଅବୟବୁ ଏବେ
ଶାନ୍ତିର ସୌଧ ନିର୍ମାଣ କରି ହେ
ସୁଖ ଭରିଦିଅ ଭବେ ॥



# ଆୟୋଜକ

ସୂରୁଯ ଉଏଁ ପୂରୁବ ଦିଗେ
ଗଭୀର ନିଶିଥେ ଚନ୍ଦ୍ରମା ଜାଗେ ।
ଅରୁଣ ଧରି କିରଣ ତୂଳୀ
ଚିତ୍ର କରି ବସେ ଭଳିକି ଭଳି ।
ନିଶାକାଳେ ଆସେ ନିଶାମଣି ପୁଣି
ଧବଳିତ କରି ଧରଣୀ ରାଣୀ ।
ଉନ୍ମାଦ ସମ ନାଚେ ରତ୍ନାକର
ମୃଦୁ ମନ୍ଦ ତାଳେ ବହେ ସମୀର ।
ନାଚିନାଚି ଆସେ ପାହାଡ଼ି କନ୍ୟା
ସୌନ୍ଦର୍ଯ୍ୟରେ ସେହୁ ମଞ୍ଜୁ ଅନନ୍ୟା ।
ବହି ଆସିଥାଏ ଗିରିବନ ଭେଦି
ତା' ରୂପ ଦେଖିବାକୁ ମନକରେ ଯଦି ।
ନିଶାମଣି ବିଦାୟେ ମା' ମୁଖ ସିକ୍ତ
ଆସିବାକୁ ଦିବାକର ପ୍ରାଚୀରେ ଉଦ୍ୟତ ।
ପ୍ରଭାତରେ ସୁନ୍ଦର ସେ ପରାଚୀ ତୁଠ
ସୂର୍ଯ୍ୟଦେବ ଆସନ୍ତି ନକରି ମଠ ।
ସଂଜ ବେଳେ ହୁକେ ହୋ ଶୁଣୁଥାଏ କାନ
ମନ୍ଦିରରେ ଘଣ୍ଟା ଧ୍ୱନି ଭଜନ ଜଣାଣ ।
ଗୋଧୂଳିର ଦୃଶ୍ୟ ଅଟେ ମନୋହର
ମାଆ କୋଳେ ଯାଇଥାଆନ୍ତି ପ୍ରଭୁ ଦିବାକର ।
ଯାହାର ଆଦେଶେ ଏତେ ଆୟୋଜନ
ସିଏ ତ ଅଟନ୍ତି ସ୍ୱୟଂ ଭଗବାନ ।
ଖଞ୍ଜି ଦେଇଛନ୍ତି ଯେତେକ ବିଭବ
ଆଜୀବନ ତାଙ୍କୁ ମନ ନ ଭୁଲିବ ॥



# ହେ ଭାରତ ମାତା

ମୁଣ୍ଡ ଉପରେ ତୋ'ର କମାଣ ଗର୍ଜୁଛି
ଦେହଟା ସାରା ତୋ'ର କାତରେ ଥରୁଛି
ଶକ୍ତି ଥାଇ ହେଉ ତୁହି ଶକ୍ତିହୀନ
କିଏ ସେ କହିବ ତୋତେ ସ୍ୱାଧୀନ ?
ପାଳି ସାରିଲୁଣି ସୁବର୍ଣ୍ଣ ଜୟନ୍ତୀ
ସେ ବାପୁଜୀ ନେତାଜୀ ଆଉ ନାହାନ୍ତି
କେତେ ସ୍ୱପ୍ନ ଆଉ କେତେ ପୁଣି ଆଶା
ଭୁଲିଲେଣି ଜନତା ଆଉ ନାହିଁ ନିଶା ।
ରକ୍ତ ତ ତାଙ୍କର ଥଣ୍ଡା ପଡ଼ିଲାଣି
ତୋ'ର ସ୍ନେହ ମମତା ସବୁ ଭୁଲିଲେଣି
ଖାଇଲେ ତୋ'ର ପିଇଲେ ତୋ'ର
ଗାଇଲେ କିନ୍ତୁ ସବୁ ବିଦେଶର ।
ଖଦି ଲୁଗାର ତ ଭେଳା ବୁଡ଼ିଲାଣି
ବିଦେଶୀ ଲୁଗା ମୁଣ୍ଡ ଟେକିଲାଣି
ଗାନ୍ଧୀ ବୁଢ଼ା ଥିଲା ବୋଲି ସିନା
କାଟିଲା ସୂତା ଧରି ବାନର ସେନା ।
ଅଛନ୍ତି ଆନେକ ଗାନ୍ଧିବାଦୀ ନେତା
ଖାଇ ଖାଇ ଖୋଳ କଲେ ଦେଶଟା ।
ଗାନ୍ଧୀ ଦେଶ ପାଇଁ ଜେଲ୍ ଆଦରିଲେ
ଦୁର୍ନୀତି ଅଭିଯୋଗେ ଏମାନେ ମଲେ ।

କିଏ ଯୁରିଆ କିଏ ଗୋଖାଦ୍ୟ
ଜନତାଙ୍କ ଝାଳ ଏମାନଙ୍କ ଖାଦ୍ୟ ।
ନାରୀ ନିର୍ଯାତନା ଅବା ବାଟ ମାରଣା
ଏ ସବୁ ଏମାନଙ୍କ ଧନ୍ଦା ହେଲା ସିନା ।
ଏମାନେ କ'ଣ ଚଳାଇବେ ଦେଶ
ଜନତାଙ୍କ ବିଶ୍ୱାସେ ଦିଅନ୍ତି ବିଷ ।
ଗାନ୍ଧୀଙ୍କ ଶ୍ରମ ଆଣିଲା ସ୍ୱାଧୀନ
ଲାଗିପାଡି ଏମାନେ କରିବେ ପରାଧୀନ ।
ସ୍ୱାଧୀନତା ଦିବସ ପାଳିଲେ କି ହେବ
ମହାମାନବଙ୍କ ଆତ୍ମା ଶାନ୍ତି ନ ପାଇବ
ସେମାନଙ୍କର ଆମେ ଅଯୋଗ୍ୟ ଦାୟାଦ
ଅପକର୍ମ କରି ତାଙ୍କୁ କାହିଁ ଦେବା ଖେଦ ।।



# କଳାର ପଥେ

ଓଡ଼ିଶା ମାଆ ଲୋ ଓଡ଼ିଶା ମାଆ
କଳାରେ ଜଗତେ କରିଲୁ ନାଆଁ ।
ଶୁଣି ଆସୁଛି ଲୋ ମୋ'ର ବେନି କର୍ଣ୍ଣ
କଳାରେ ଲଭିଥିଲୁ ତୁ ଶିଖର ସ୍ଥାନ ।
କଳାର ଦେଶ ବୋଲି ତୁ ହେଲୁ ଉତ୍କଳ
କଳିଙ୍ଗର କଳା ହେଲା ଜଗତେ ବିରଳ ।
ନିହାଣ ମୁନରେ ତୋ'ର ସନ୍ତାନ
ପଥର ପ୍ରାଣରେ ଦିଏ ଜୀବନ ।
ସେ କଳା ଅଙ୍କ ତୋ'ର ଲିଭିନି ଆଜି
ଅଦ୍ୟପି ଦଣ୍ଡାୟମାନ ମନ୍ଦିର ରାଜି ।
ତୋହର କଳାର ସେ ଜୀବନ୍ତ ପ୍ରତୀକ
ଯେଉଁଥିପାଇଁ ବଢ଼ାଇଛୁ ଜଗତେ ଟେକ ।
ବାତ୍ୟା ସିନା ହରିନେଲା ତୋ'ର ନୀଳିମା
କଳା କିନ୍ତୁ ଲିଭିନାହିଁ ତୋ' ଅଙ୍ଗୁ ଜମା ।
ଜଗନ୍ନାଥ ମନ୍ଦିର ଅବା କୋଣାରକ ଗାତ୍ର
ପରିଦର୍ଶକ ନେତ୍ରେ ସେ ଯେ ହୁଏ ପବିତ୍ର ।
ଦେଖିଲି ଯେବେ ମୁଁ କୋଣାରକ ମନ୍ଦିର
ମନ ମୋ' ହୋଇଲା ଆନନ୍ଦେ ବିଭୋର ।

ଆଗରୁ ସିନା ଶୁଣି ନ ଥିଲା କାନ
ଦେଖି ସନ୍ତୋଷ ହେଲା ମୋ' ମନ ।
କେତେ ବଡ଼ କାରିଗର ଶିଳ୍ପୀ ଚିତ୍ରକର
କେତେ ବଡ଼ କଳାକାର ପୂର୍ବ ପୁରୁଷ ଆମର ।
ନାହାନ୍ତି ଆଜି ବିଶୁ ଅବା ବାରଣ ବଢ଼େଇ
ନାହିଁ ସେ ବାଳକ ଧରମା ନାହାଁନ୍ତି କେହି ।
ଦେଖିଲେ ନେତ୍ରେ ଥରେ ସେ ବିଚିତ୍ର ଧାମ
ମନେ ପଡ଼ିଯାଏ ସଦା ତାଙ୍କରି ନାମ ।
ସେମାନଙ୍କର ଆମେ ଅଯୋଗ୍ୟ ଦାୟାଦ
ତାଙ୍କର କଳାକୁ ନଦେଖାଉ ଦରଦ ।
ତୋ'ର କଳାକୁ ଦେଖିବା ପାଇଁ
କେତେ ବିଦେଶୀ ଆସନ୍ତି ଧାଇଁ ।
କବିଏ ବର୍ଣ୍ଣିଲେ କଳା ସୁନ୍ଦରୀ
ତୋ' ରୂପ ଲାବଣ୍ୟେ ରୁଚି ସବୁରି ॥



# ଏହି ମୋ' ଦେଶ

ପୁଣ୍ୟଭୂମି ଦେବଭୂମି
ସାର ମୋ' ଦେଶରେ
ସାର ମୋ' ଦେଶରେ,
ଆର୍ଯ୍ୟଭୂମି ତୀର୍ଥଭୂମି
ଦିବ୍ୟ ଭାରତ ବର୍ଷରେ
ଧନ୍ୟ ଭାରତ ବର୍ଷରେ ।

ଗଂଗା ବହେ ଯମୁନା ବହେ
ପୁଣି ତା'ର ଛାତିରେ
ପୁଣି ତା'ର ଛାତିରେ,
ହିମାଳୟ ଛିଡ଼ା ହୁଏ
ତା'ର ମୁଣ୍ଡ ଉପରେ
ତା'ର ମୁଣ୍ଡ ଉପରେ ।

ପାଦ ତୋ'ର ଧୋଇଦିଏ
କୁମାରିକା ଭାଇରେ
କୁମାରିକା ଭାଇରେ,
ମୁକ୍ତିର ଗୀତ ଗାଏ
ତ୍ରିରଙ୍ଗ ଝଣ୍ଡାରେ
ତ୍ରିରଙ୍ଗା ଝଣ୍ଡାରେ ।

ଶତ୍ରୁ ସଇନେ ଜବାବ ଦିଅନ୍ତି
ତା’ ବୀର ସନ୍ତାନରେ
ତା’ ବୀର ସନ୍ତାନରେ,
କୃଷକ ଭାଇ ଖଟେ ବିଲରେ
ହାଡ଼ ଭଙ୍ଗା ଶୀତରେ
ହାଡ଼ ଭଙ୍ଗା ଶୀତରେ ।
ମାନେନାହିଁ ସେ ଖରା ବରଷା
କଟାଏ ଜୀବନ କ୍ଷେତରେ
କଟାଏ ଜୀବନ କ୍ଷେତରେ,
ବୈଜ୍ଞାନିକ ତା’ର ପୁଣି
ଶୋଇ ନଥାଏ ରାତିରେ
ଶୋଇ ନଥାଏ ରାତିରେ ।
ବାହାର କରି ନୂଆ ବିଚାର
ନାଁ କରେ ବିଶ୍ୱରେ
ନାଁ କରେ ବିଶ୍ୱରେ,
ଏ ଦେଶର ପାଣି ପବନ
ମିଳେ ସ୍ୱର୍ଗ ଶାନ୍ତିରେ
ମିଳେ ଦିବ୍ୟ ଶାନ୍ତିରେ ।
ଏ ଦେଶ ମୋ’ ଜନମଭୂମି
ତା’ ପରିକେ ନାହିଁରେ
ତା’ ପରିକେ ନାହିଁରେ ॥



# ଗିରିରାଜର ଆହ୍ୱାନ

ଦୁର୍ଗମ ଗିରି ନଭ ପ୍ରାଚୀର
ସଗର୍ବେ ହୁଏ ଠିଆ,
ଭାରତ ମାତା ମୁକୁଟ ସିଏ
ହିମାଳୟ ତା' ନାଆଁ ।
ଦେବତା ଆତ୍ମା ଚିର ନମସ୍ୟ
ଜାତି ବୁଝଇ ସିନା,
ବକ୍ଷ ବିଦାରି ସନ୍ତ୍ରାସ ଦଳ
ସୁନାକୁ କରେ ଚୂନା ।
ବଙ୍କର କରି କରିଛି ଘର
ପେଟ ଭିତରେ ତା'ର,
ଦାଢ଼ିଆ ଦଳ ବଢ଼ିଆ କରି
କରନ୍ତି କାରବାର ।
ହିନ୍ଦୁ ସ୍ଥାନର ମାନ ଇଜ୍ଜତ
ଇଚ୍ଛଇ ଦଳିବାକୁ,
ଜବାନ ରକ୍ତେ ଶ୍ୱେତ ଶିଖର
ଲୋହିତ ତା'ର ବୁକୁ ।

ସହିପାରୁ ନି ଯନ୍ତ୍ରଣା ସିଏ
ଦେଖ ସଭିଏଁ ବୀର,
ଶୃଗାଳ ଶିଶୁ ନୁହେଁ ତ ତୁମେ
ଶାର୍ଦ୍ଦୁଳ ବଂଶଧର ।
ଶୋଇଛ କିଆଁ ଅମୃତ ଶିଶୁ
ଜାଗ ଆସିଛି ବେଳ,
ଫିଙ୍ଗ ଅରାତି ବଳ ଭାରତୁ
ଚାହିଁଛି ସିନ୍ଧୁ ଜଳ ।
ପର୍ବତ ରାଜ ଆହ୍ୱାନ ଦିଏ
ଉଠରେ ପ୍ରତି ବୀର,
ମାନବ ଜାତି ଅରି ବିନାଶି
ପ୍ରାଣ ସାର୍ଥକ କର ॥



# ଆସ ନେତାଜୀ

ଉଷ୍ଣ ରୁଧିରେ ଉଷ୍ମ ପାଶବେ
　　　　　　ମୁକତି କଣା ଜାଗେ,
ଆଜାଦ୍ ହିନ୍ଦ ଭାରତ ଛୁଏଁ
　　　　　　ଉତ୍ତର ପୂର୍ବ ଭାଗେ ।
ଦୁର୍ଜ୍ଜୟ ବୀର ଭେଦି ଦୁର୍ଗମ
　　　　　　ଭାରତ ଭୂମେ ଠିଆ,
ମାତୃ ପ୍ରେମରେ ହଜି ହଜାଇ
　　　　　　ପ୍ରଣମେ ହିନ୍ଦୁ ମାଆ ।
ଅପରାଜେୟ ମୁକ୍ତି ସଂଗ୍ରାମୀ
　　　　　　ଝରାଏ ପ୍ରେମ ଲୁହ,
ଲୋଟଇ ଭୂମେ ଅତି ଆନନ୍ଦେ
　　　　　　ତୁମେ ପ୍ରକାଶି କୋହ ।
ଆଜାଦ ପ୍ରାଣ ସୁଭାଷ ବୀର
　　　　　　ରକ୍ତ ପିପାସୁ ସାଜେ,
ଦିଲ୍ଲୀ ଚଲୋର ଡାକରା ସାଥେ
　　　　　　ବନ୍ଧୁକ ତା'ର ଗର୍ଜେ ।

ମାରିବ ଅବା ମରିବ ସିଏ
ଦୃଢ଼ ପ୍ରତିଜ୍ଞା ତା'ର,
ଅରି ବିନାଶି ସୁଖ ଢାଳିବ
ମାତୃ ପଣତେ ତା'ର।
ହିନ୍ଦୁ ଜାତିକୁ ମାଗେ ସୁଭାଷ
ଦିଅ ରକତ ମୋତେ,
ସୁଖ ଐଶ୍ୱର୍ଯ୍ୟ ଢାଳିବି ନିଶ୍ଚେ
ଲୋଡ଼ା ତୁମର ଯେତେ।
ଅଗ୍ନି ବର୍ଷିଲା ମୁଖୁ ତାଙ୍କର
ହେଜିଲା ହିନ୍ଦୁସ୍ଥାନୀ,
ପ୍ରାଣ ଉତ୍ସର୍ଗୀ ଫଉଜେ ମିଶେ
ଜୀବନ ତୁଚ୍ଛ ମଣି।
ଚିର ଭାସ୍ୱର ଦେବ ପୟରେ
କୋଟି ପ୍ରଣତି ଢାଳେ,
ଆସ ନେତାଜୀ ଆସ ହେ ଭୂମେ
ବନ୍ଦୁଛୁ ଅଶ୍ରୁଜଳେ॥



# ଅଭିଳାଷ

ଜୀବନ ପାହାଚ ଚଢ଼ି ଚଢ଼ି ଚାଲେ
ତୁମ ଆଶୀର୍ବାଦ ପାଇ,
ସ୍ୱତନ୍ତ୍ର ଦିବସେ ଭକ୍ତି ଦୀପ ଜାଳେ
ତୁମ ପଦ ତଳେ ମୁହିଁ ।
କାଗଜ ପତରେ ଆଜି ଗଣା ହୁଏ
ବରଷକ ଗଲା ଗଡ଼ି,
କିମ୍ପାଇଁ କେଜାଣି ବସିଛି ଆଜି ମୁଁ
ଧରି ମୋ' ପାଚିଲା ଦାଢ଼ି ।
ଭାବନା ରାଇଜେ ମନ ମୋ'ର ବୁଲେ
ନୀରବ ଜଗତ ପାଇଁ,
ଶୈଶବ ଯାଇଛି ଯୌବନ ଯାଉଛି
ତହିଁକି ଶୋଚନା ନାହିଁ ।
ଜୀବନେ ନିଦାଘେ ସାହସ ଧରିଛି
ଚରଣ ପଙ୍କଜ ଧ୍ୟାୟୀ,
ବରଷା ଯାତନା ବରଣ କରିଛି
ଅଶ୍ରୁଜଳେ ପଦ ଧୋଇ ।
ହାଡ଼ ଭଙ୍ଗା ଶୀତେ ସ୍ମରଣ କରିଛି
ସାହା ତ ହୋଇଛ ପ୍ରଭୁ,
ଦୁଃଖ କଷ୍ଟ ସବୁ ଭୁଲି ଯାଇଛି ମୁଁ
ଭାବିଛି ବସନ୍ତ ସବୁ ।
ହୃଦ ଉପବନେ ଅତି ଯତନରେ
ସାଇତିଛି ପ୍ରଭୁ ଫୁଲ,
କର୍ମଫଳ ସହ ଅଶ୍ରୁଜଳ ଧାର
ଆସିଲେ ମୋ' ଶେଷ ବେଳ ।

ମିଳନ ବିଚ୍ଛେଦ          ସଂସାର ନିୟମ
    ସବୁ ତ ତୁମ୍ଭ ଭିଆଣ,
ଯେତେବେଳେ ଯାଏ          ଥିବ ପ୍ରାଣ ପକ୍ଷୀ
    ଭଜିବ ତବ ଚରଣ ।
ଏତିକି ପ୍ରାର୍ଥନା          କରିବି ପ୍ରଭୁ ହେ
    ଆଜି ଏ ପୁଣ୍ୟ ଦିବସେ,
ଆତ୍ମୀୟ ସୋଦର          ବନ୍ଧୁ ପରିଜନେ
    ସୁଖ ଥାଉ ସର୍ବ ପାଶେ ।
ଆନନ୍ଦେ ରୁହନ୍ତୁ          ମୋ'ର ସ୍ନେହାସକ୍ତା
    ମାନନୀୟ ଗୁରୁଜନେ,
ଦିଅ ଶୁଭାଶୀଷ          ପ୍ରଭୁ ଜଗଦୀଶ
    ସର୍ବେ ମୋ'ର ପୁଣ୍ୟ ଦିନେ ।
ଅଭିଳାଷ ମୋ'ର          ଦେଖିବି ସରବ
    ହସହସ ମୁଖ ମୁହିଁ,
ତାଙ୍କ ହସ ଦେଖି          ମୋ' ମୁଖ ମଣ୍ଡଳେ
    ଥିବ ସଦା ହସ ରହି ।
ଗୁରୁ ଗୁରୁଜନେ          ଭକ୍ତି କରୁଥିବି
    ଲଘୁଜନେ ଦେଇ ସ୍ନେହ,
ଦୟାମୟ ପ୍ରଭୁ          ଭବ ସ୍ରୋତ ଭଲେ
    ଜୀବନ ତରଣୀ ନିଅ ।
କାହା ପ୍ରାଣେ ମୁହିଁ          ନ ଦିଏ ସନ୍ତାପ
    ଏତିକି ଦୟା କରିବ,
ଦୟାମୟ ତୁମ୍ଭ          ବାନା ଦେଖୁ ଦେଖୁ
    ଦିନ ମୋ'ର ସରୁଥିବ ॥

# ଏହି ସେ ଉତ୍କଳ

କୋଟି ଓଡ଼ିଆଙ୍କ ମାଆ
ଜଗତେ ଉଠୁଛି ନିଆଁ ।
କଳାମୟ କଳେବର
ଶୋହେ ମହାନଦୀ ତୀର ।
ବଖାଣେ ଯା'ର ମହିମା
ଶୁଣାଏ ଯାର ଗରିମା ।
ଧରମା ବାଜିଆ ରମା
ମମତାମୟୀ ସେ ମାଆ ।
ବାରିଷ୍ଟର ମଧୁଦାସ
ପ୍ରଚାରି ଏ ଦେଶ ଯଶ
ଜଗନ୍ନାଥ ଛନ୍ତି ବସି
ସ୍ୱର୍ଗାଦପୀ ଗରୀୟସୀ ।
ଏହି ସେ ଉତ୍କଳ ଚିର ଉର୍ଦ୍ଧ୍ୱସ୍ୱଳ
ଗରିୟସୀ ଅଟେ ପୁଣ୍ୟ ହିନ୍ଦୁସ୍ଥାନେ
ଯା' କୀର୍ତ୍ତି ବଖାଣେ ଗଂଗା ଗୋଦାବରୀ
ବୀରତ୍ୱ ବଖାଣେ ଭଗ୍ନ ବାରବାଟୀ ।
କଳା ବଇଭବ କୋଣାରକ ଶିଳା
ଚନ୍ଦ୍ରଭାଗା ତୀର ପ୍ରଭାତେ ପ୍ରଦୋଷେ
ସୁଭାଷ ସୁରେନ୍ଦ୍ର ବକ୍ସି ରାଜଗୁରୁ
ବୀର ପ୍ରସବିନୀ ଦେବତା ଦୁଲାଳୀ ।
ବୀର ଖାରବେଳ ତ୍ୟାଗୀ ଗୋପବନ୍ଧୁ
ଜନମି ଏ ଦେଶେ ଲଭିଲେ ପ୍ରଶଂସା
ସାଗର କୂଳେ ଯା' ଦେବ ଅଧିଦେବ
ଏହି ସେ କଳିଙ୍ଗ ମୋ'ର ଜନ୍ମଭୂମି ।।



# ମାଆ ପାଇଁ ପଦେ

କୁଆଁ କୁଆଁ ରାବି କମ୍ପାଇ ଦୁନିଆ
ଭୂମିଷ୍ଠ ହୋଇଲି ସତେ
ଆତ୍ମୀୟ ସୋଦର ବନ୍ଧୁ ପରିଜନ
ଆନନ୍ଦିତ ହେଲେ କେତେ ।
କାନ୍ଦୁଥିଲି ମୁହିଁ ହସୁଥିଲେ ସର୍ବେ
ମୋତେ ତୁ କୋଳେଇ ନେଲୁ
ବକ୍ଷରୁ ନିଗାଡ଼ି ଅମୃତ ପିଆଇ
ତୁନି ମୋତେ କରାଇଲୁ ।
କୁନି କୁନି ହାତ ଧରି ତୁହି ମୋତେ
ଚାଲିବା ଶିଖାଇ ଦେଲୁ
କେତେ ନୀତି କଥା ଆଦର୍ଶ କାହାଣୀ
କାନେ କାନେ ଶୁଣାଇଲୁ ।
ସିଲଟ ଖଡ଼ିରେ ଶିଖାଇଲୁ ଲେଖା
ବ୍ରହ୍ମା ବିଷ୍ଣୁ ମହେଶ୍ୱର
ତୁହିଁ ମୋର ଅଟୁ ପ୍ରଥମ ଶିକ୍ଷିକା
ତୋ'ର ପଦେ ନମସ୍କାର ।
ଅଳି ଅରଦଳି ଶୁଣି ଅଛୁ ମୋ'ର
ଅଭାବେ ଯତନ କରି
ଦେଇଅଛୁ ଶିକ୍ଷା ନେଇଛି ମୁଁ ଦୀକ୍ଷା
ତୋ'ର କଥା ଅନୁସରି ।

ନିଜ ପେଟ କାଟି ଖୁଆଇଛୁ ଆମେ
ସହୋଦର ଭଗ୍ନୀ ଚାରି
ଯାତନା ସହିଛୁ ଆମ ପାଇଁ କେତେ
ବୁହାଇଛୁ ଅଶ୍ରୁବାରି ।
ଦେଇନାହୁଁ ତୋତେ କେବେ ଅପବାଦ
ତୋ' ନୀତି କରିଛୁ ଅସ୍ତ୍ର
ତୋ'ର ସ୍ନେହ ଶ୍ରଦ୍ଧା ଆଶିଷ ବରଷା
ଆମର ବରିଷ୍ଠ ଶସ୍ତ୍ର ।
ଏ ମାତୃ ଦିବସେ ଅଛୁ ଆମ ପାଶେ
ଏହା ତ ଭାଗ୍ୟ ଆମର
ଆଉ କିବା ଲୋଡ଼ା ତୋ' ଠାରୁ ଅଧିକ
ତୁ ତ ଶ୍ରେୟ ଜଗତର ।
ତୋ' ଆଶିଷ ପାଇ ଆଉ ଯେତେ ପଥ
ଲଙ୍ଘିଯିବୁ ଅନାୟାସେ
ସୁସ୍ଥ ରହିଥା ତୁ ପ୍ରାର୍ଥନା କରୁଛୁ
ଆମେ ନିତି ବିଭୁ ପାଶେ ।।



# ପାଠ ପଢ଼ିବି ମଣିଷ ହେବି

ପାଠ ପଢ଼ିବି ମଣିଷ ହେବି
ଅନ୍ୟାୟ ବିରୁଦ୍ଧେ ମୁଁ ଯୁଝିବି
ଶାନ୍ତି ସୌହାର୍ଦ୍ଦ୍ୟ ବାର୍ତ୍ତା ପ୍ରଚାରି
ଦେଶ ସେବାରେ ଜୀବନ ଦେବି ।

ପାଠ ପଢ଼ିବି ମଣିଷ ହେବି
ଦୁଃଖୀ ଜନତା ସେବା କରିବି
କବି ମୁଁ ହେବି ଲେଖକ ହେବି
ଅଜ୍ଞାନ ଅନ୍ଧକାର ଦୂର କରିବି ।

ପାଠ ପଢ଼ିବି ମଣିଷ ହେବି
ଡାକ୍ତର ହୋଇ ରୋଗୀ ସେବିବି
ଓକିଲ ହୋଇ ଆଇନ ଜଗିବି
ଦୁଃଖୀ ଦରିଦ୍ରେ ନ୍ୟାୟ ମୁଁ ଦେବି ।

ପାଠ ପଢ଼ିବି ମଣିଷ ହେବି
ସୈନିକ ହୋଇ ଯୁଦ୍ଧ କରିବି
ଶତ୍ରୁ ସୈନିକ ପାଦରେ ଦଳି
ତ୍ରିରଙ୍ଗା ଝଣ୍ଡା ଉଡ଼େଇ ଦେବି ।

ପାଠ ପଢ଼ିବି ମଣିଷ ହେବି
ଶିକ୍ଷକ ହୋଇ ମଣିଷ ଗଢ଼ିବି
ପିଲାଙ୍କୁ ମିଶାଇ ନିଜେ ମିଶିବି
ଅନାବିଳ ପ୍ରେମେ ମୁଁ ହଜିଯିବି ।

ପାଠ ପଢ଼ିବି ମଣିଷ ହେବି
ମାଟି ମାଆର ମହତ ରଖିବି
ଜୀବନ ବାଜି ଲଗାଇ ଦେଇ
ମାଆର ଟେକ ନିଶ୍ଚେ ରଖିବି ॥



# ଆଜିର ନାରୀ

ଆହେ ପ୍ରଜାପତି କମଣ୍ଡଳୁ ଧାରୀ
ଏ ସୁନ୍ଦର ଜଗତର ତୁମେ ସୃଷ୍ଟିକାରୀ ।
ବିଚିତ୍ର ଭିଆଇଛ ତୁମେ ଏ ସୃଷ୍ଟିରେ
ସମସ୍ତଙ୍କୁ ବାନ୍ଧିଅଛ ଗୋଟିଏ ଡୋରିରେ ।
ତୁମ ସୃଷ୍ଟିରେ ଜନମିଲେ ନାରୀ
ନାରୀ ନୁହେଁ ସତେ ବିନାଶକାରୀ ।
ତାହାରି ମାୟାରେ ପଡ଼େ ଯେ ମାନବ
ଭୁଲିଯାଇ ନିଜକୁ ସଜାଏ ଦାନବ ।
ନାରୀ ମାୟା ତ ଦେବେ ଅଗୋଚର
କ'ଣ କରିବେ ଏ ସାଧାରଣ ନର ?
ସମସ୍ତେ ତାଙ୍କ ପ୍ରେମେ ହେଲେ ବାୟା
ନ ବୁଝିପାରି ସେ ଧ୍ୱଂସକାରୀ ମାୟା ।
ନାରୀ ସାଜେ କେବେ ନିଜକୁ ଜନନୀ
କେବେ ଅବା ଜାୟା କେବେ ଭଗିନୀ ।
କେତେବେଳେ ସାଜେ ରୂପସୀ ଅଙ୍ଗନା
କେତେବେଳେ ମୋହେ ସାଜି ବାରାଙ୍ଗନା ।
ଜନନୀ ସାଜେ ଯେବେ ଦିଏ ସେ ସେନେହ
ଦେଖିଦେଲେ ଦୁଃଖ ଥରେ ଗଡ଼ାଏ ଲୁହ ।
ଭଗିନୀ ସାଜେ ପୁଣି ରାକ୍ଷୀ ବାନ୍ଧେ ହାତେ
ବିପଦେ ଆପଦେ ସଦା ଥାଏ ପୁଣି ସାଥେ ।

ଯେତେବେଳେ ଆସେ ଜାୟା ସାଜି ସେହି
ଅଧା ଭାଗ ମାଗିଥାଏ ସବୁଥିରେ ସେହି ।
ବିପଦେ ଦିଏ ସାହସ କ୍ଳାନ୍ତେ ଦିଏ ଶ୍ରଦ୍ଧା
ଜୀବନ ସାଥୀ ନ ଦିଏ କେବେ ବାଧା ।
ଯେବେ ସିଏ ସାଜେ ରୂପସୀ ଅଙ୍ଗନା
ଧ୍ୱଂସ ପଥେ ଟାଣେ ନକରି କେବେ ମନା ।
ବାରାଙ୍ଗନା ମୋହରୂପ ବିପଥେ ଚଳାଇ
ମନମଥ କୁବିଚାର ମାର୍ଗେ ରଥ ବାହି ।
ତାହାରି ପାଇଁ ଜଗତ ହୁଏ ଛାରଖାର
ପ୍ରମାଣ ଅଛି କଥା ଯୁଗ ଯୁଗର ।
ମୋହିନୀ ରୂପ ପାଇଁ ହିରଣାକ୍ଷ ମଲା
ସତୀ ସୀତା ପାଇଁ ଲଙ୍କେଶ୍ୱର ଗଲା ।
ଦ୍ରୌପଦୀ ପାଇଁ ହେଲା ମହାଭାରତ ଯୁଦ୍ଧ
ନାରୀ ପାଇଁ ହେଲା ତାରକାସୁର ବଦ୍ଧ ।
କଳି ଯୁଗେ ନାରୀ ସାଜେ ନିଜକୁ ରୂପସୀ
ବିଉଟି ପାର୍ଲରେ ଧାଇଁ ଥାଏ ଦିବା ନିଶି ।
ସଙ୍ଗେସଙ୍ଗେ ଧରେ ସେହୁ କେତେକେତେ ରୂପ
ହରିନେଇଥାଏ ସେହୁ କେତେ ନର ତପ ।
ଦେଖି ସେ ମୋହିନୀ ରୂପ ତା' ସୁନ୍ଦର କାୟା
ଜୀବନରେ କେବେ ବାବୁ ନ ହୁଅରେ ବାୟା ।
ମହାକାଳ ଫଳଠାରୁ ସେ ବିଷତର
ମନେରଖ ସଦା ଭାଇ ଅବଜ୍ଞା ନକର ।
ଅବଜ୍ଞା କଲେ ଭାଇ ହେବ ତୁମ ନାଶ
ଭାବିବାକୁ ଆଉ ଭାଇ ନ ହେବ ସାହସ ॥



# ମାଆର ଆହ୍ୱାନ

କାହିଁ ଗଲ ମୋ'ର       ବୀରପୁତ୍ର ଗଣ
        କାହିଁ ଗଲ ମୋ'ର ଧନ
କିଏ ସେ ପୋଛିବ       ମୋ'ର ଆଖି ଲୁହ
        କିଏ ମୋ' ରଖିବ ପ୍ରାଣ ।
କାହିଁ ଥିଲା ଇଏ       ବିଦେଶୀ ବେପାରୀ
        ବିନତି କରିଲା ଆସି
ଅନୁମତି ଦେଲେ       ବଣିଜ କରିବୁ
        କହିଲା ଆଣ୍ଠେଇ ବସି ।
ହାତେ ପାଦେ ମୋ'ର       ବେଡ଼ି ପକାଇଲା
        ଦେଖି ପାରୁନାହିଁ ଧନ
ଯେତେ ଥିଲା ମୋ'ର       ଧନ ସମ୍ମାନ
        ହରିନେଲା ସେହି ହୀନ ।
ଭାରି କପଟିଆ       ଅଟେ ସେ ବଣିଆ
        ନେଲା ମୋ' ଶାସନ ଡୋରି
କେତେ ନିର୍ଯାତନା       ଦେଲାଣି ମୋତେ ସେ
        ଦେଖୁଛୁ ଦୁଃଖ ମୋହରି ।
ଫାଶି ଖୁଣ୍ଟେ ନେଇ       ଝୁଲାଇ ଦେଲା ସେ
        ମୋ'ର ବୀରପୁତ୍ରେ ଧରି
ନିର୍ଦ୍ଦୟେ ନିର୍ମମେ       ହତ୍ୟା ସେ କରିଲା
        ଛାତି ମୋ' ହୁଏ ବିଦାରି ।

ତୋ'ର ଭାଇ ବନ୍ଧୁ    ଅଟେ ପରା ସିଏ
ଚିହ୍ନି କି ପାରୁନୁ ତୁହି
ଗୋଲାମ ବଣିଆ    ଅତ୍ୟାଚାର ସବୁ
କେମିତି ଯାଉଛୁ ସହି ।
ମୁହିଁ ପରା ତୋ'ର    ସେହି ମାଆ ଧନ
କହୁଥିଲି ନାନା କଥା
ରାମ ଲଇକ୍ଷଣ    ଭରତ ଶତ୍ରୁଘ୍ନ
ଶିବାଜୀ ଅତୀତ ଗାଥା ।
ଅସହ୍ୟ ଯନ୍ତ୍ରଣା    ସହି ପାରୁନାହିଁ
କିପରି କହିବି ଆଜି
ଛିଡ଼େଇ ନେ ଦୃଢ଼    ଶୃଙ୍ଖଳ ମୋ' ଦେହୁ
ବୀରପଣ ଜାଗୁ ଆଜି ।
ସେ ଫାଶୀ ଖୁଣ୍ଟକୁ    ଡରି ଗଲେ ଆଜି
ପାଇବି କି ମୁକ୍ତି ମୁହିଁ
ଗୁଳିର ଜବାବ୍    ଗୁଳିରେ ଦେଏ ତୁ
ଆଉ ତ ସମୟ ନାହିଁ ।
ଏକଜୁଟ ହୁଅ    ମୋ'ର ବୀର ପୁତ୍ର
ଯାଅ ନାହିଁ ଜମା ଡରି
ମିଳିମିଶି ତାକୁ    ପଠାଇ ଦିଅ ହେ
ଡେର ନଈ କରି ପାରି ॥



# ସେହି ମୋର ମାଆଟି

ସେହି ମୋର ମାଆଟି
ସୁନ୍ଦର ଲାଗେ ତା'ର ନାଆଁଟି
ଦେଖିଦେଲେ ଥରେ ଶୁଖିଲା ମୁହଁ
ନ ରଖିପାରେ ଛାତିରେ କୋହ
ବୁହାଇଦିଏ ସେ ଉଷୁମ ଲୁହ
ସେହି ମୋ'ର.............. ॥

ଶାନ୍ତି, ଶକ୍ତି ଅପରୂପା ପ୍ରତିମୂର୍ତ୍ତି
ଆଶା ଭରସାର ପ୍ରେରଣା ଦାତ୍ରୀ
ସବୁ ସହିନିଏ ଯେସନ ଧରିତ୍ରୀ
ସେହି ମୋ'ର.............. ॥

କଥାରୁ ଝରୁଥାଏ ତା'ର ଅମିୟ ଧାରା
ସିକ୍ତ କରେ ମନ ଦୁନିଆଁ ସାରା
ପୁଲକି ଉଠେ ଯେସନେ ଫୁକିଆ ତାରା
ସେହି ମୋ'ର.............. ॥

ମାଆ ମୋ'ର ସ୍ନେହମୟୀ
ତା' ପରି କେ ଜଗତେ ନାହିଁ
ନିଜେ ହସି ସର୍ବେ ହସାଉ ଥାଇ
ସେହି ମୋ'ର............. ॥
ପେଟରେ ତା'ର ଭୋକ ନଥାଏ
ଆଖିରେ ତା' ନିଦ ନଥାଏ
ବାଟକୁ ସଦା ଚାହିଁ ବସିଥାଏ
ସେହି ମୋ'ର............. ॥
ବିପଦେ ଭରସା ଦିଏ
ଶକ୍ତି ଦିଏ ଭକ୍ତି ଦିଏ
ଅଭୟ ଦେଇ ଯୁଦ୍ଧେ ଜିତାଇ ଦିଏ
ସେହି ମୋ'ର............. ॥



# ଶପଥ

ବୋଉଲୋ !
ରାଜଧାନୀର ରାଜ ରାସ୍ତାରେ
ଭଙ୍ଗା ସାଇକେଲ ଧରି ଯାଉଥିବାବେଳେ
ମନେପଡ଼େ ତୋ'ର ସେହି କଥା
"ବାଟ ହୁଡ଼ିବୁ ନାହିଁରେ ମନେ ରଖିଥା ।
ସହରର ଚାକଚକ୍ୟ ଭିତରେ
ଭୁଲିଯିବୁ ନାହିଁ ତୋ' ମାଆକୁ
ଚାଲିଚାଲି କ୍ଲାନ୍ତ ହୋଇଗଲେ
ଧାଇଁ ଆସିବୁ ତା' କୋଳକୁ" ।

ବୋଉଲୋ !
ମନେଅଛି ମୋ'ର
ତୋ'ର ସେଇ କେଇ ପଦକଥା
କଟିଯିବ ପଛେ ମଥା
କରୁଛି ଶପଥ ନିଶ୍ଚେ ରଖିବି ତୋ' କଥା
ଶୁଣିନାହୁଁ କେବେ ଶୁଣିବୁ ନାହିଁ ତୁ
ତୋ' ସନ୍ତାନ ଅପବାଦ
ଦେବଅଂଶୁମାଳି ପଶ୍ଚିମେ ଉଇଁଲେ
ନ ଭାଙ୍ଗିବ ଆଉ ନିଦ ॥



# ପବିତ୍ର ଦିବସ: ଗୁରୁ ଦିବସ

ତୁମେ ପରା ଗୁରୁଦେବ ବ୍ରହ୍ମା ବିଷ୍ଣୁ ଶଙ୍କର
ପବିତ୍ର ଗୁରୁ ଦିବସେ ନମସ୍କାର ଘେନାକର ।
ଦେଖାଇଲ ତୁମେ ମୋତେ ଏ ଜୀବନରାସ୍ତା
କରିଦେଲ ମୋ'ର ତୁମେ ଭବିଷ୍ୟତ ବ୍ୟବସ୍ଥା ।
ତୁମେ କ୍ଷମା ଶାନ୍ତି ସତ୍ୟ ଦୟା ଅବତାର
ପୂଜିବି ମୁଁ ଆଜି ଆହେ ଦିଅ ତୁମ ପୟର ।
ତୁମେ ପରା ଗୁରୁଦେବ ତୁମେ ଜ୍ଞାନ ଦାତା
ଅମା ଅନ୍ଧକାରେ ତୁମେ ଦେଖା ମୋତେ ରାସ୍ତା ।
ଦେବତାଠୁ ବଡ଼ ତୁମେ ପୂଜ୍ୟ ଗୁରୁଦେବ
ଜାଣିଲି ଈଶ୍ୱରଙ୍କୁ ପାଇ ଆଶିଷ ତବ ।
ତୁମେ ପରା ଗୁରୁଦେବ ସାକ୍ଷାତ ଈଶ୍ୱର
ଜୀବନ୍ତ ଦେବତା ତୁମେ ନର କଳେବର ।
ତବ ଆଶୀର୍ବାଦେ ନରେ ପାଆନ୍ତି ସର୍ବସ୍ୱ
ପାଇ ତବ ଅଭିଶାପ ହୁଅନ୍ତି ଯେ ନିଃସ୍ୱ ।
ପବିତ୍ର ଗୁରୁ ଦିବସେ ହେ ଗୁରୁ ଦିଅ ପାଦପଦ୍ମ
ସେବି ତବ ପଦରଜ ଧନ୍ୟ କରେ ଜନମ ।
ଆଶିଷ ଦିଅ ହେ ଗୁରୁଜୀ କରୁଛି ମିନତି
ତୁମ ଶ୍ରୀପାଦେ ଥାଉ ସଦା ମୋ' ଭକତି ।
ଏ ଜୀବନେ ପ୍ରତି ଦିନ ହୁଅନ୍ତା କି ଗୁରୁ ଦିବସ
ଗୁରୁ ପାଦ ସେବି ସେବି ଛାଡ଼ନ୍ତି ଶେଷ ନିଃଶ୍ୱାସ ।
ସନ୍ତୋଷ ହୋଇଲେ ଆହେ ଗୁରୁଜୀ ଆପଣେ
ଆସିବ ଆନନ୍ଦ ଲହରୀ ନବ ପୁଲକ ପ୍ରାଣେ ॥



# ଧନ୍ୟ ତୁ ଭୁବନେଶ୍ୱର

ଧନ୍ୟ ତୁ ଭୁବନେଶ୍ୱର ଆମ ରାଜଧାନୀ
ଇତିହାସେ ନାଆଁ ରଖିଛୁ ପୁଣି ।
କବିଏ ବର୍ଣ୍ଣିଲେ ଡତେ ମନ୍ଦିର ମାଳିନୀ
ଧନ୍ୟ ତୁ ଭୁବନେଶ୍ୱର ଆମ ରାଜଧାନୀ ।
ତୋ'ର ନାମ ଧରିବାକୁ ଲାଜ ଲାଗେ ମତେ
ଧରିଛୁ ଛାତିରେ କେତେ ପାପକୁ ସତେ ।
ମନ୍ଦିର ମଧ୍ୟରେ ଅବା ରାଜପଥେ
ନାରୀଏ ପୋଛନ୍ତି ଲୁହ ଲୋ କେତେ ।
ଏଠାକୁ ଆସନ୍ତି ଅନେକ ବେକାରୀ
ପୋଷିବେ ପେଟ ରୋଜଗାର କରି ।
ଘରଡିହ ବାନ୍ଧି କିଛି ପଇସା ଧରି
ଆସିଥାଆନ୍ତି ବେକାର କରିବେ ଚାକିରି ।
ମନ କଥା ତାଙ୍କ ମନେ ରହିଯାଏ
ଟାଉଟର ଗୁଣ୍ଡା ତାଙ୍କ ପଇସା ଖାଏ ।
ଦୁଃଖରେ ମୁଣ୍ଡରେ ସେ ହାତକୁ ଦିଏ
ଦୁଃଖ ନ ସହି ପାରି ଗରଳ ପିଏ ।
ମହରଗରୁ ଯାଇ କାନ୍ତାରେ ପଡ଼େ
ଯଦି ପାଏ ସେ କେବେ ଚାକିରି ଖଣ୍ଡେ ।
ପାଇବ ବୋଲି ସେ ଦରମା ଗଣ୍ଡେ
ଦଉଡ଼ି ଦଉଡ଼ି ତା' ଧୋକଡ଼ି ଛିଣ୍ଡେ ।
ଶିକ୍ଷିତ ବେପାରୀଙ୍କ ସଂଖ୍ୟା ଅଧିକ
ଛକରେ ବଜାରେ ଅବା ଆଡ୍ଡାରେ ଦେଖ ।
ମଦ ପିଇ ପିଇ ପେଟେ ନଥାଏ ଭୋକ
ଲୁଚିଥାଆନ୍ତି ଏକା ଦେଖିଲେ ଲୋକ ।

ଏମାନଙ୍କ ଠାରୁ ଭୟଙ୍କର ଟାଉଟର ଗଣ
ନେଇଥିବେ ଛଡ଼ାଇ ଯେତିକି ଧନ ।
ମାନିବନି ଶେଷେ ତାଙ୍କର ମନ
ଦଉଡ଼ାଇ ଦଉଡ଼ାଇ ନେବେ ଜୀବନ ।
ଧନ୍ୟ ରାଜଧାନୀ ତୁ ଭୁବନେଶ୍ୱର
କେତେ ଅଫିସର୍ ଏଠି ଟାଉଟର
କରିବେ ବୋଲି ଅତିରିକ୍ତ ରୋଜଗାର
ସାଜନ୍ତି ନିଜକୁ ସେ ଭଦ୍ର ତସ୍କର ।
ଲମ୍ପଟ କାମୁକଙ୍କ କଥାକୁ ଥାଉ
ମାର୍କେଟରେ ଅବା ପାର୍କରେ ହେଉ ।
ସନ୍ଧ୍ୟା ହୋଇଗଲେ ଯେତେ କାମ ଥାଉ
ବାହାରି ପଡ଼ନ୍ତି ଦେଖେଇବାକୁ ଭାଉ ।
ଭାଇ ଏ ହୁଅନି ସହରାଭିମୁଖୀ
କାମ ପାଇବନି ତୁମେ ମନଲାଖି ।
ପେଟ ପିଠି ଭାଇ ଯିବ ଏଠି ଶୁଖି
ଆସିବେନି ଏଠି କେହି ତୁମକୁ ଦେଖି ।
ତେଣୁରେ ବାଉଳ ମନ
ନ ଛାଡ଼ ଗ୍ରାମ୍ୟ ଜୀବନ ।
ନଦୀ କୂଳ ଖୋଲା ପବନ
ସହରେ ପରା ସାତ ସପନ ।
ଗାଆଁର ସେ ସେନେହ ଶରଧା
ସହରେ ହେଲେ ମିଳନ୍ତା ଅଧା ।
ସମସ୍ତେ ସିନା ଲାଗନ୍ତି ସାଧା ସିଧା
ଗାଆଁ ଠାରୁ ସହରେ ବେଶୀ ଅସୁବିଧା ॥



# ନିଶା

ପାନ ବିଡ଼ି ସିନା ଛୋଟିଆ ନିଶା
ଧୀରେ ଧୀରେ ଟାଣେ ବହୁ ପଇସା ।
ମଦ ନିଶା କିନ୍ତୁ ଅଳପେଇସା
ଏକାଥରେ ଟାଣେ ବହୁ ପଇସା ।
ଛଡ଼ାଇ ନିଏ ସେ ମାନ ଇଜ୍ଜତ
ପାଉଁଶ କରେ ସେ ସବୁ ମହତ ।
ନର୍କର ନର୍ଦ୍ଦମାରେ ପକାଇ ଦିଏ
ନିଶାସକ୍ତ କିନ୍ତୁ କେତେ ସୁଖ ପାଏ ।
ସମସ୍ତେ କରନ୍ତି ଛି ଛାକର
ଦେଇଥାଆନ୍ତି ପରା କୁକୁର ଆଦର ।
ଗୋଇଠା ମାଡ଼ ଛାଞ୍ଚୁଣି ପାହାର
ହୁଏ ପୁଣି ସବୁ ଏକ ଆକାର ।
ନିଶାରେ ଦେଖେ ସେ ସ୍ୱପ୍ନର ପ୍ରେୟସୀ
ପାଖରେ ତା'ର ଅଛି ସେ ବସି ।
ବାହୁରେ ଭାବେ ଅମାପ ବଳ
ପାଦ କିନ୍ତୁ ହୁଏ ଟଳମଳ ।
ମନରେ ଭାବେ ଅଛି ଅସୀମ ସାହସ
ନିଶାରେ ମୋଡ଼ଇ ଆପଣା ନିଶ ।
ନିଶା ଛାଡ଼ିଗଲେ ସାଜଇ ଫକୀର
କାନ୍ଦି କାନ୍ଦି ଲୁହ ନ ସରେ ତା'ର ।
ସେତିକି ଚିନ୍ତା ଭଲା ଆଗରୁ ଥାଆନ୍ତା
ଏତେ କଷ୍ଟ ସେ ପାଇ ନ ଥାଆନ୍ତା ।
କେହି କରି ନଥାଆନ୍ତେ ଛି ଛାକର
ସମସ୍ତେ କରିଥାଆନ୍ତେ କେତେ ଆଦର ।
ତେଣୁରେ ଭାଇ ମଦକୁ କେବେ ଛୁଇଁବ ନାଇଁ
ଛୁଇଁଲେ ଜାଣିଥା ତରିବ ନାହିଁ ॥



# ନଳିନୀ

ନଳିନୀ ତୁହି ସୁମନ ଜେମା
ଅଂଶୁମାଳି ପ୍ରିୟତମା
ବିଭୁ ଭରିଲେ ନାନା ଉପମା
ରୂପେ ଶାନ୍ତ ନିରୂପମା ।

ଦେଖି ତୋ' ରୂପ ମୁଗ୍ଧ ହୁଅନ୍ତି
ଦାନବ ଗନ୍ଧର୍ବ ଦେବ
ପ୍ରେମେ ବିହ୍ୱଳ କିଆଁ ନ ହେବେ
ହୋଇ ଛାର ଏ ମାନବ ।

ଭ୍ରମେ ଭ୍ରମର ତୋ' ପାଶେ
ପୀରତି ପାଇବା ଆଶେ
ନଦେଲେ ତୁହି ପୀରତି ରେଣୁ
ଛାଡ଼େନା ମୋଦେ ପାଶେ ।

ତୋ'ର ପ୍ରୀତିରେ ହୋଇ ସେ ଅନ୍ଧ
ପ୍ରାକର୍ମ ଭୁଲି ହୁଅଇ ବନ୍ଧ
ମଧୁର ସ୍ୱରେ ମିନତି କରେ
ଆଦରେ ବୋଳି ରେଣୁ ଶିରରେ ।

ଏହି ସୃଷ୍ଟିରେ ସେହି ଭ୍ରମର
କାହିଁ କରେ ଛାରଖାର
ପୀରତି ମଧୁ ଉତ୍ତଳାକରେ
ଜୀବନେ ପ୍ରୀତି ନାନ୍ଦୀ ଗାନରେ ॥



# କ'ଣ ଦରକାର ?

ହେ ଭଗବାନ !
ଦରକାର ନାହିଁ ମୋ'ର ଅଚଳାଚଳ ସମ୍ପତ୍ତି
ଚାହେଁ ନାହିଁ ମୁହିଁ ହେବି ଅଧିପତି ।
ଦରକାର ନାହିଁ ମୋ'ର କୋଠାବାଡ଼ି
ବ୍ୟାଙ୍କ ବାଲାନ୍ସ ଅବା ଏ.ସି. ଗାଡ଼ି ।
ଉଚ୍ଚ ଆଶା ତ ଅଟେ ଆଜି ଶସ୍ତା
ସଭିଏଁ ଧରନ୍ତି ସେହି ଗୋଟିଏ ରାସ୍ତା ।
ଦରକାର ମୋ'ର ଖାଲି ତୁମେ ଆଉ ତୁମେ
ପାଉଥାଏ ଦରଶନ ତବ ଜନମେ ଜନମେ ।
ଦରକାର ମୋ'ର ତୁମ ପାଦେ ଭକ୍ତି
ଦରିଦ୍ର ଅସହାୟେ ଆହା କରିବାକୁ ଦିଅ ମୋତେ ଶକ୍ତି
ଅନ୍ଧ କରିଦିଅ ନାହିଁ ପ୍ରଭୁ ଦେଇ ଧନ ସ୍ୱାଭିମାନ
ଇଛା ନାହିଁ ହେବାକୁ ଲୋକହସା ଅବା ହିନୀମାନ ।
ଆଖି ଥାଇ ନ ହୁଏ ମୁଁ ଅନ୍ଧ
ଶକ୍ତି ଦିଅ ହଟାଇବାକୁ ପ୍ରତି ପ୍ରତିବନ୍ଧ ।
ଖାଇବାକୁ ଗଣ୍ଡେ ପିନ୍ଧିବାକୁ ଖଣ୍ଡେ ମୋ'ର ଦରକାର
ସାଧୁ ସନ୍ଥ ନ ଯାଆନ୍ତୁ ଶୂନ୍ୟ ହସ୍ତେ ପ୍ରଭୁ ଦୟାକର ।
ମଣିଷ ପରି ଗଢ଼ିତୋଳ ମୋତେ
ଅମଣିଷ ହୋଇ ବଞ୍ଚିବାକୁ ଇଛା ନାହିଁ ଜଗତେ ।
ତେଣୁ ହେ କୃପାସିନ୍ଧୁ ଜଗତଜନ ବନ୍ଧୁ
ମୋତେ ଦୟାକର
ସାର୍ଥକ କର ହେ ଜୀବନ ଦେଇ ଆଶିଷ ତୁମର ॥



# ନୂଆରାସ୍ତା

ହେ ପ୍ରଭୁ ତୁମେ ତ ନିଶ୍ଚଳ
ତୁମର ଦୁନିଆ କାହିଁକି ଚଳଚଞ୍ଚଳ ?
ତୁମେ ତ ସ୍ଥିର
ତୁମର ଏ ସୃଷ୍ଟି କାହିଁକି ଅସ୍ଥିର ?
ତୁମେ ତ ସ୍ଥିତପ୍ରଜ୍ଞ
ତୁମ ସୃଷ୍ଟିର ଏ ମାନବ କାହିଁକି ବୋଲାଏ ବିଜ୍ଞ ।
ସ୍ୱୀୟ ଗର୍ବେ କରେ ଅଭିମାନ
ଭାବେ ସ୍ୱର୍ଗ ତାକୁ ଆଉ ଦୁଇ ହାତ ପୁଣ ।
ଜ୍ଞାନ ସାଗରୁ କାଣିଚାଏ ପାଇ ନଥାଏ
ନିଜ ପ୍ରଶଂସା ନିଜେ ବଖାଣୁଥାଏ ।
କେହି ଶୁଣୁ ବା ନଶୁଣୁ
ଗାଏ କେବେ ଉଚ୍ଚ ଆବାଜରେ ଅବା ହୋଇ ଗୁଣୁଗୁଣୁ ।
ଭାବେ ନାହିଁ ଦିନେ କେଉଁ ପଥର ଯାତ୍ରୀ
ଧ୍ୱଂସର ଯାତ୍ରୀ ହୋଇ ମଧ୍ୟ ନ୍ୟୂନ ଭାବେ ଧରିତ୍ରୀ ।
ପରିଣାମ ଆସିବା ବେଳକୁ ଆଖିରୁ ଶୁଖିଥାଏ ଲୁହ
ଧ୍ୱମାଇ ଯାଇଥାଏ ତା'ର ଛାତିର କୋହ ।
ସେତେବେଳେ ନେଡ଼ିଗୁଡ଼ ଯାଇଥାଏ କହୁଣୀକୁ
ଭାବି ଭାବି ଦିନ ସରେ ତା'ର ବିପର୍ଯ୍ୟସ୍ତ ଅତୀତକୁ ।
ହେ ପ୍ରଭୁ ତୁମେ ତ ସୃଷ୍ଟି କର୍ତ୍ତା ଜଗତ ନିୟନ୍ତା
ଟାଣି ଆଣ ତାକୁ ଧ୍ୱଂସ ପଥୁ ଦେଖାଇ ନବ ରାସ୍ତା ।
ନ ହେଲେ ଜଳିଯିବ ସେ ନିଜ ଦାବାନଳେ
ଦବି ଯିବ ସେହୁ ଲୀନ ହୋଇ ଅଗଭୀର ଜଳେ ।
ତେଣୁ ହେ ପ୍ରଭୁ ଦିଅ ସଦ୍‌ବୁଦ୍ଧି ତାକୁ
ମଣିଷ ପରି ମଣିଷ ହେବା ପାଇଁ ସେ କେବଳ ଶିଖୁ ॥



# ସଂଜଦୀପ

ସରିସରି ଆସେ ଦୀପରୁ ତେଲଲୋ
ଜଳିଜଳି ଆସେ ସଳିତା
ମାଡ଼ି ଆସିଲାଣି ଅନ୍ଧାରଲୋ ମାଆ
ଦୀପ ତୁ ଟିକେ ଜଳୁଥା ।
ସପ୍ତରଥୀ ପରି ମାଡ଼ି ଆସେ ତମ
ତମ ତମ ହୋଇ ପରାଲୋ
ସୁଭଦ୍ରା ନନ୍ଦନ ପରି ତୁ ମଝିରେ
ଏକା ତୁହି ଯୁଝି ଥାଉ ଲୋ ।
ମୃଦୁ ମଳୟ ଆସିଗଲେ ଥରେ
ମିଶି ଯିବୁ ଲୋ ତା' ଛାତିରେ
ଏବେ କିନ୍ତୁ କାହିଁ ବାଧା ତୁ ଦେଉ ଲୋ
ତା'ର ସେହି ଚୋରାପ୍ରୀତିରେ ।
ଯୁଝୁ ଯୁଝୁ ଯଦି ପାହିଗଲା ରାତି
ସପ୍ତରଥୀ ହେବେ ଦୂର ଲୋ
କପଟିଆ କୃଷ୍ଣ କପଟ ନକଲେ
ହୋଇଯିବୁ ତୁ ଅମର ଲୋ ।

ବାର ବର୍ଷ ପିଲା ବାଜି ରାଉତ ସେ
ଥିଲା ସେ ଏକା ବୋଲି ସିନା
ସପ୍ତରଥୀ ପରି ମାରି ଦେଲେ ତାକୁ
ବନ୍ଧୁକେ ସେ ଇଂରେଜସେନା ।
ନିଜ ଜାତି ଭାଇ ଆତ୍ମୀୟ ସୋଦର
ଧରମାକୁ ଦେଲେ ସେ ବଳି
ଇତିହାସେ ସିଏ ଅମର ରହିଲା
ତାକୁ କିଏ ପାରିବ ଟାଳି ।
ଧ୍ରୁବ ପ୍ରହଲାଦ ଭକ୍ତିରେ ବାନ୍ଧିଲେ
ଯୋଗୀରାଜ ପ୍ରଭୁ ହରି ଲୋ
କେତେକେତେ ଖେଦ ଖେଦିଗଲେ ସେହି
ରଖିଥିଲେ ତାଙ୍କୁ ହରି ଲୋ ।
ସାହସ ଦେଉଛି ସାନ୍ତ୍ୱନା ଦେଉଛି
ସଞ୍ଜଦୀପ ମୁହିଁ ତୋତେ ଲୋ
ପ୍ରଭୁ ପାଦବନ୍ଦି ଯୁଝୁଥା ତୁହିଲୋ
ନାମ ତୋ' ରହିବ ଜଗତେ ଲୋ ॥



# ଉଷାମନ୍ତ୍ର

ମଙ୍ଗଳେ ଅଇଲା ଉଷା
କମନୀୟ ବେଶ ଭୂଷା ।
ସୁନେଲି ବାସ ଆବୃତ
ସରବେ କଲା ମୋହିତ ।
ତାକୁ ଦେଖି ହୃଦରାଣୀ
ସ୍ନେହ ଶ୍ରଦ୍ଧା ଢାଳେ ଜାଣି ।
ସ୍ୱାଗତ ବନ୍ଦନା ଗାଇ
ଚଳ ଚଞ୍ଚଳ ହୁଅଇ ।
ଜୀବନ ଯୁଦ୍ଧ ସଂଗୀତ
ବେସୁରା ରାଗେ ଯୁକତ ।
ଆଗେ ଆଗେ ଗାଇ ଗାଇ
ଦିନକର ରଥ ବାହି ।

କହୁଛନ୍ତି ଆହେ ପ୍ରିୟ
କର୍ମ ସ୍ଥାନେ ଦେଖା ଦିଅ ॥



# ଇଚ୍ଛା ହୁଏ ମୋର ଆଜି

ଇଚ୍ଛା ହୁଏ ମୋର ଆଜି
ସକାଳ ବନ୍ଦନା ଗାଆନ୍ତି କି ?
ସବୁ ହିତାକାଂକ୍ଷୀ ସବୁ ସାଙ୍ଗସାଥି
ମେଳେ ବସି ଖୁସି ମନାନ୍ତି କି ?
ସମସ୍ତଙ୍କ ପାଇଁ ବିଭୁ ପଦାରବିନ୍ଦେ
ଆଶୀର୍ବାଦ ଭିକ୍ଷା କରନ୍ତି କି ?
ସ୍ନେହ ପୁଅ ଝିଅମାନଙ୍କ ମଥାରେ
ହାତ ଥୋଇ ଆଶିଷ ଦିଅନ୍ତି କି ?
ସଂସାର ହାଟେ ମୋ'ର
ଭଲପାଇବାର କିଣା ବିକାରେ
ନିଜକୁ ସାମିଲ୍ କରନ୍ତି କି ?
କେତେବେଳେ ଆସେ ସମୟ ଆହ୍ୱାନ
କେତେବେଳେ ପୁଣି କର୍ତ୍ତବ୍ୟ ଡାକରା
କେଜାଣି କାହିଁକି ଇଚ୍ଛା ରହିଯାଏ
ଇଚ୍ଛା ହୋଇ କରି
ସବୁ ପଡ଼ିଯାଏ ଫିକା
ବିଧାତା ସୁମରି ଅଦୃଶ୍ୟେ ପ୍ରଗତି
ଆଗ ପଛ ମୋ'ର ଫାଙ୍କା
କିଏ ସେ ଯେପରି ପଛରୁ କହୁଛି
ଚାଲିବାକୁ ହେବ ଏକା
ଏକା - ଏକା - ଏକା ।

ଜୀବନ ସଂସାର ସବୁ ଯେ ଅଳୀକ
ଅଳପ ସମୟ ଦେଖା
କର୍ତ୍ତବ୍ୟ ତୋତେ କରିବାକୁ ହେବ
ସମସ୍ତଙ୍କୁ କରି ସଖା ।
କାହାର ସାଙ୍ଗ କାହାର ଭାଇ
କାହାର ବାପା ପୁଣି କାହାର ପୁଅ
ସ୍ତ୍ରୀର ସ୍ୱାମୀ ଆଉ କେତେକେତେ
ଛାତ୍ର ଛାତ୍ରୀଙ୍କର ଗୁରୁ
କର୍ତ୍ତବ୍ୟ କରୁକରୁ ଭଲରେ
ହେ ପ୍ରଭୁ ମୋ' ଜୀବନଟା ସରୁ
ଇଚ୍ଛା ହୁଏ ମୋ'ର ସର୍ବ ପ୍ରାଣେ ସୁଖ
ମୋହର ସକାଳ ବନ୍ଦନା ଭରୁ ।
ସକାଳ ବନ୍ଦନା ଭରୁ...... ॥



# ଶ୍ରଦ୍ଧା

ଶ୍ରଦ୍ଧାକୁ ଦିନେ ମୁଁ　　　ଶ୍ରଦ୍ଧାରେ ଡାକିଲି
　　ନିଭୃତ କୋଣେ ସେ ଥିଲା,
ଅଶ୍ରୁ ସିକ୍ତ ତା'ର　　　ନୟନ ଯୁଗଳ
　　ବ୍ୟତିବ୍ୟସ୍ତ କରିଦେଲା ।
ମୁଣ୍ଡକୁ ତାହାର　　　ଆଉଁଶି ପଚାରି
　　ବୁଝିଲି ତା' ମନ କଥା,
ହୃଦୟ ମୋହର　　　ଆନ୍ଦୋଳିତ ହେଲା
　　ଶୁଣି ତା' ମରମ ବ୍ୟଥା ।
ବିକଳେ କହିଲା　　　ଅପବିତ୍ର ହୁଏ
　　ଆଜି ମୋ'ର ଶ୍ରଦ୍ଧା ନାମ,
ରାଜନୀତି ଚାଲେ　　　ମୋ'ର ନାମେ ଆଜି
　　ହୁଏ ମୁହିଁ ବଦନାମ ।
ନେତା ଅଭିନେତା　　　ଅଫିସରଠାରୁ
　　ମଳି ମୁଣ୍ଡିଆ ହାକିମ,
ସବୁଠି ଅଛି ମୁଁ　　　କୋଉଠି ବି ନାହିଁ
　　ଲାଗୁଛି ମୋତେ ସରମ ।
ଆଜି ବି ନଗଡ଼ା　　　ଦିଏ ନଅ ଗଡ଼ା
　　ବିକାଶର ପ୍ରଶ୍ନ କାହିଁ,
ରାଜଧାନୀ ବକ୍ଷ　　　ଟାଙ୍ଗରା ବି ଦିଶେ
　　ଶ୍ରଦ୍ଧା ଚିହ୍ନ ଦିଶେ ନାହିଁ ।

ଶୁଣି ତା'ର କଥା ଦରଦ ହୃଦୟ
ବିକଳ ହୋଇଲା କେତେ,
ଅସହାୟ ଶିଶୁ ପ୍ରାଣ ମୋ' କାନ୍ଦିଲା
ଭାସିଲି ମୁଁ ପ୍ରତି ସ୍ରୋତେ ।
ବହୁବର୍ଷ ପରେ ମୋ' ଗାଆଁ ମୁଣ୍ଡରେ
ଭେଟିଲି "ଶ୍ରଦ୍ଧା"କୁ ପୁଣି,
ଆସିଅଛି ସିଏ ଦେବକନ୍ୟା ସାଜି
ହୋଇ ମୋ' ହୃଦୟ ରାଣୀ ।
ଆଲିଙ୍ଗନ କଲି ଅତି ଆଦରରେ
ଅମାପ ସେନେହ ଦେଇ,
ଉଠିବ ଦୁର୍ବଳ ଉଠିବ ଗରିବ
ଭାବିଲି "ଶ୍ରଦ୍ଧା"କୁ ପାଇ ।
ନୂତନ ଚେତନା କୃଷକ ପାଇବ
ଗରିବ ବିଦ୍ୟାର୍ଥୀ ପାଇଁ,
ଆସିଅଛି ଶ୍ରଦ୍ଧା ମୋ' ଗାଆଁ ଭୂଇଁକୁ
ନୂତନ ଜନମ ନେଇ ।
କହିଲି ଶ୍ରଦ୍ଧାକୁ ଯୁବ ସମାଜରେ
ସଂସ୍କାର ଆଣିବୁ ତୁହି,
ଦରକାର ହେଲେ ପ୍ରତି ରକ୍ତ ବିନ୍ଦୁ
ଦେବା ପାଇଁ ରାଜି ମୁହିଁ ।
ନମସ୍କାର ମୋ'ର "ଶ୍ରଦ୍ଧା"ର ଜନକେ
ସୁଯୋଗ ଦେବାରୁ ମୋତେ,
ବନ୍ଦେ ବିଭୁ ପଦେ ଆୟୁଷ୍ମତୀ ହେଉ
"ଶ୍ରଦ୍ଧା" ଏ ମର ଜଗତେ ।।



# ବାପା

ସ୍ୱର୍ଗ ଠାରୁ ବଡ଼ ଯିଏ ବାପା ସିଏ ମୋ'ର
ହୃଦୟ ମନ୍ଦିରେ ତାଙ୍କ ଆସ୍ଥାନ ସୁନ୍ଦର ।
ତାଙ୍କ ପରି ସ୍ନେହ ଶ୍ରଦ୍ଧା ଆଉ କିଏ ଦେବ ?
ରାତି ଦିନ ଏକ କରି ମଂଗଳ ଚିନ୍ତିବ ।
କେତେ କଷ୍ଟ କେତେ ଶ୍ରମ କରନ୍ତି ମୋ' ପାଇଁ
ତାଙ୍କ ନାମ ତଳେ କେବେ ପକାଇବି ନାହିଁ ।
ନଭେ ରବି ନ ଉଠୁଣୁ ଆରମ୍ଭନ୍ତି କାର୍ଯ୍ୟ
ଅବିଶ୍ରାନ୍ତ କର୍ମବୀର ଧନ୍ୟ ତାଙ୍କ ଧୈର୍ଯ୍ୟ ।
ଜୀବନ୍ତ ଠାକୁର ମୋ'ର ପୂଜେ ପ୍ରତିକ୍ଷଣେ
ଉଚ୍ଚେ ସଦା ତାଙ୍କ ନାମ ରଖିବି ଭୁବନେ ।
ଶପଥ କରୁଛି ଆଜି ତାଙ୍କ ପାଦ ଛୁଇଁ
ସମାଜ ସେବି ବି ମୁହିଁ ଭଲ ପିଲା ହୋଇ ।।



# କଲମ ଚାଷ

କେତେ ଯେ କବିତା ଲେଖା ହୋଇଯାଏ
ପରିବେଶ ପରେ ଭାଇ,
କେତୋଟି ଗଛ କେ ଲଗାଇଛ ଆହେ
ଦେବ ଟିକେ ମୋତେ କହି ।
ଖାତା କଲମରେ ଭାଷଣ ବାଜିରେ
ନ ବଞ୍ଚୁ ଓଡ଼ିଆ ଜାତି,
କର୍ମରେ ଦେଖାଉ ହୃଦୟ ଭିତରେ
ରଖି ସେ ଭାଷା ପୀରତି ।
ମନ ମୋ'ର ଆଜି ଖୋଜୁଅଛି ତା'ର
ଚରଣ ବନ୍ଦନା ପାଇଁ,
ଲଗାଇଲେ ଯିଏ ଗଛ ଏକ ଏକ
ସୁସ୍ଥ ପରିବେଶ ପାଇଁ ।
ଗୋଟିଏ ଦିବସେ ପର୍ଯ୍ୟାବରଣ ତ
ନୁହଁଇ କେବେ ସମ୍ଭବ,
ପ୍ରତିଦିନ ଯଦି ପରିବେଶ ପାଇଁ
ଚିନ୍ତନ କରା ନଯିବ ।
କବିତା ପ୍ରବନ୍ଧ ସାହିତ୍ୟ ରଚନା
କରୁଛେ କଲମ ଚାଷ,
ତା' ସହ ପାଦପେ ଭରିଲେ ସଂସାରେ
ନିଶ୍ଚୟ ଖେଳିବ ହସ ॥



# ପୁଲଓ୍ୱାମାରୁ ଚିଠିଟିଏ.....

ପାର୍ଥିବ ଶରୀର ଆମ ନଷ୍ଟ ହୋଇଛି ସତ,
ଦେଶ ପାଇଁ ଜୀବନ ଦେଇ ଆମେ ଗର୍ବିତ ।
କିନ୍ତୁ ଆମ୍ଭେ ମରିନାହୁଁ ଅଛୁ ତ ଜୀବିତ
ଯେ ପର୍ଯ୍ୟନ୍ତ ସନ୍ତ୍ରାସ ହୋଇନି ନିପାତ..... ॥

ଦେଶସାରା ଶୋକସଭା ଗର୍ଜନ ତର୍ଜନ
ସାମୟିକ ଅଶ୍ରୁପାତ କୋହମୟ କ୍ରନ୍ଦନ ।
ପଡ଼ିଯିବେ ଥଣ୍ଡା ସବୁ ଚାଲିଗଲେ କିଛିଦିନ
ବାପା ମାଆ ସ୍ତ୍ରୀ ପିଲା କାନ୍ଦୁଥିବେ ସବୁଦିନ..... ॥

ଅଛି ଯଦି ଇଚ୍ଛା ତୁମ ଦେବା ପାଇଁ ସମବେଦନା
ଆମ ପିଲାମାନଙ୍କୁ ଆଦରୁ ଭାରତୀୟ ସେନା ।
ପ୍ରତିଶୋଧ ନେବେ ତାଙ୍କ ନାହିଁ ଅନୁଶୋଚନା
ଆମରି ରୁଧିର ଯେଣୁ ତାଙ୍କ ଦେହେ ପ୍ରବାହମାନା.... ॥

ହେ ସରକାର, ଅତୃପ୍ତ ଆତ୍ମା ଆମ ପୁଲଓ୍ୱାମା ଆକାଶେ
ତୃପ୍ତ ହେବ ନିଶ୍ଚୟ ସନ୍ତ୍ରସବାଦୀଙ୍କ ସମୂଳ ବିନାଶେ ।
ସହିହେଉନାହିଁ ଦେଖି ତାଙ୍କ ଆନନ୍ଦ ଉଲ୍ଲାସ
ବିଦ୍ରୂପ ଚାହାଣି ଆଉ ବିକଟାଳ ହସ....... ॥

ଅଶରୀରି ହୋଇ ବି ଆମେ ଲଢ଼େଇ କରିବୁ
ଭାରତ ମାତା ଆଖିର ଲୋତକ ନିଶ୍ଚୟ ପୋଛିବୁ ।
ସନ୍ତ୍ରାସବାଦୀ ବିହୀନ ଧରଣୀ ମାଆକୁ କରିବୁ
ଅବିଳମ୍ବେ ଆମେ ତାହା ଦେଖେଇ ଦେବୁ..... ॥

କିନ୍ତୁ, ହେ ମୋ'ର ଭାରତବାସୀ
ସମୟ ଆସିଛି ଏବେ ହୁଅ ସାହସୀ ।
ଆଉ ଗୋଟେ ପୁଲଓ୍ୱାମା କାଣ୍ଡ ନ ପହଞ୍ଚୁ ଆସି
ଆମ ସହ ଯୋଗ ଦିଅ ନିଜ ଶୌର୍ଯ୍ୟ ପ୍ରକାଶି..... ॥

ଶିକ୍ଷକ ଛାତ୍ରୁ ମସୀ ହାତେ ଧରୁ ଅସୀ
ବିଷ ନ ପିଇ ସୀମାନ୍ତକୁ ଚାଲି ଆସୁ ଚାଷୀ ।
ବିଜ୍ଞାନୀ ଓକିଲ ଅଧିକାରୀ ଅବା ଚପରାସୀ
ସମସ୍ତେ ସମସ୍ତେ ଯୋଗଦିଅ ଆସି....... ॥

ଯଦି ତୁମ୍ଭେ ପ୍ରକୃତରେ ଭଲପାଅ ଆମେ
ହେ ନେତା ରାଜନେତା ଲାଗ ଦେଶ କାମେ ।
ଶୁଅନ୍ତୁ ମୋ' ଦେଶବାସୀ ଟିକିଏ ଆରାମେ
ମୁହଁ ତୋଡ଼ ଜବାବ ଦିଅ ନିମକ ହାରାମେ..... ॥
ଭାରତ ମାତା କୀ ଜୟ.........



# ନିଜ ଟେକ ନିଜେ ରଖ

ରାତି ଅଧଟାରେ ବିନା ରୋଶଣିରେ
କେମିତି ଉଠିଲ ପ୍ରଭୁ
କେମିତି ହୋଇଲା ତୁମ ଜଳକେଳି
ଚାହିଁ ବସିଛନ୍ତି ସବୁ !
ଜାଣି ପାରିଲେନି କେହି ତିଳେହେଲେ
ଏହି କି ଇଚ୍ଛା ତୁମର ?
ବରଷଟା ସାରା ଚାହିଁ ବସିଛନ୍ତି
କେତେ ଭକତ ପ୍ରବର ।
କରୋନା କାତର ଏଥିପାଇଁ କାଳ
ତୁମେ କାଳ ମହାକାଳ
କେମିତି ସମ୍ଭାଳି ବସିଅଛ ପ୍ରଭୁ
ଆହେ ଭକତ ବତ୍ସଳ ।
ବିନା ଭକତରେ ତୁମ ବିଜେଯାତ୍ରା
ଶୁଣିନାହିଁ କେବେ କାନ
କି ସମୟ ଆସି ହେଲା ଉପନୀତ
କୁହ ପ୍ରଭୁ ନାରାୟଣ ।

ଶ୍ରଦ୍ଧାଳୁ ପତାକା ଏ ଯାଏ ହଟିନି
ତୁମେ ରତ୍ନ ସିଂହାସନେ
କେମିତି ହେଉଛି ତୁମ ତେରବେଶ
ଭାବୁଅଛି ମନେମନେ ।
କଡ଼ା ପ୍ରଶାସନ ସଶସ୍ତ୍ର ପ୍ରହରୀ
ତୁମ ବଡ଼ ଦାଣ୍ଡେ ଆଜି
କି ହେବ ଅବସ୍ଥା ତୁମ ସଂସାରର
କରୋନା ପ୍ରଳୟ ସାଜି ।
ଅଚ୍ୟୁତ ମାଳିକା ହେଉଅଛି ସତ
ଗୋଟି ଗୋଟି କରି ଦେଖେ
ଭାଳୁଛି ମାନବ ଜାଣୁଛି ଜଗତ
ପ୍ରଶଂସିତ ପ୍ରତି ମୁଖେ ।
ନିଜ ଟେକ ପ୍ରଭୁ ନିଜେ ରଖ ଆଜି
ଟେକି ଦେଲୁ ଦୁଇ ହାତ
କରୋନା ସଂକଟ ଦୂର କରି ପ୍ରଭୁ
କର ସୃଷ୍ଟି ପୂର୍ବବତ ॥



# ଅମର ଜୀବନ

ଶେଷ ସ୍ଥାନ ଆମ ଶମଶାନ ଭୂଇଁ
ସେଇଠି ମିଳିବା ଯାଇ
ପଦ ପଦବୀରେ ମତ୍ତ ହୋଇ କିଆଁ
ବଡ଼ିମା ଦେଖାଅ ଭାଇ ?
ନୁହଁ ଚିରସ୍ଥାୟୀ ଧନ ଓ ଯୌବନ
ପାଶୋରି ଦିଏ କି ମନ
ଧନୀ ହେଉ ଅବା ଗରିବ ସେ ହେଉ
ମଶାଣିରେ ସର୍ବସମ ।
କେହି କହିବେନି ବଡ଼ଲୋକ ବୋଲି
ଧନ ତୁ ଅର୍ଜିଲୁ ବୋଲି
କେହି କହିବେନି ହତଭାଗା ବୋଲି
ଧନ ନାହିଁ ତୋ'ର ବୋଲି ।
ଦୁହିଁଙ୍କୁ ଚିହ୍ନିବେ ଶବଟିଏ ବୋଲି
ନଥିବ ତୋ' ବଡ଼ପଣ
ଯାହା ସଞ୍ଚିଥିବୁ ଧନରତ୍ନ ସବୁ
ରହିଯିବ ମନେ ଘେନ ।

ଦିବସ ରଜନୀ ଭଲ କର୍ମ କର
ଲୋକେ ପକାଇବେ ମନେ
ମରିଗଲେ ସୁଦ୍ଧା ଜୀବିତ ରହିବୁ
ସବୁରି ଲୋକଙ୍କ ପ୍ରାଣେ ।
ଯଦି ନ କରିବୁ ଭଲ କର୍ମ ତୁହି
ଧନୀକ ବୋଲାଇ ମନେ
ବଞ୍ଚି ଥାଉ ଥାଉ ଘୃଣାପାତ୍ର ହେବୁ
ନ ପଚାରିବେ କେ ଦିନେ ।
ଗରିବ ହୋଇ ବି ଶୁଭ କର୍ମ କଲେ
ସଭିଏଁ ଝୁରିବେ ତାକୁ
ମରି ବି ଅମର ରହିବ ସେ ଚିର
ନାହିଁ ଆଉ ବୁଝିବାକୁ ॥

# ଶୁଭମୟ ସକାଳ

ଶୁଭମୟ ହୋଇ ଆସଇ ସକାଳ
ଶୁଭମୟ ହୋଇ ଆସେ
ପୂରୁବ ଆକାଶେ ସୂରୁଯ ଦେବତା
ସୁନେଲି ଆଭାରେ ହସେ ।
ଶୁଭ ମନାସିବା ପାଇଁ ତ ସକଳେ
ହୋଇଉଠିଥାଆନ୍ତି ବ୍ୟସ୍ତ
ଜନକ ଜନନୀ ସନ୍ତାନ ସନ୍ତତି
ରୁହନ୍ତୁ ସରବେ ସୁସ୍ଥ ।
ଦେବତା ଅଙ୍ଗନ ବସୁମତୀ ପୀନ
ହୁଅଇ ସତେ ଉଚ୍ଛନ୍ନ
ଦୁଃଖ କଷ୍ଟ ହୀନ ହେଉ ଏ ଜୀବନ
ଇଚ୍ଛଇ ସରବ ପ୍ରାଣ ।
ପିତାମାତା ପ୍ରାଣ ବିକଳ ହୁଅଇ
ନିବେଦନ୍ତି ଲକ୍ଷ୍ମୀପତି
ସୁଖ ଶାନ୍ତି ଦେଇ ସନ୍ତାନ ଜୀବନେ
ଘୁଞ୍ଚାଅ ସର୍ବ ଦୁର୍ଗତି ।
ଆହେ ବିଶ୍ୱ ପ୍ରାଣ କରୁଛି ପ୍ରାର୍ଥନା
ଶକ୍ତି ଦିଅ ମୋ' ସନ୍ତାନେ
ସରବ ପରାଣେ ଆହ୍ଲାଦ ଦିଅନ୍ତୁ
ଦୁଃଖ ହରି ପ୍ରତି ପ୍ରାଣେ ।
ଛାଡ଼ି ମାତୃକୋଳ ଆସନ୍ତି ସକଳ
ବିଶ୍ୱ ସ୍ରଷ୍ଟା ବର ପାଇଁ
ନିଶ୍ଚଳ ଦୁନିଆ ହୁଅଇ ଚଞ୍ଚଳ
ନବ ସଂଜୀବନୀ ପାଇ ।।



# ବିଶ୍ୱବାସୀଙ୍କୁ ଆହ୍ୱାନ

ହେ ବିଶ୍ୱବାସୀ,
ଜୀବନର ଦୋଛକି ରାସ୍ତାରେ
ଠିଆ ହୋଇ ତମେ କ'ଣ ଭାବୁଛ ?
କ'ଣ ଚାହଁ
ଯୁଦ୍ଧ ନାଁ ଶାନ୍ତି ?
ଭାବି ଦେଖ କେଉଁଟି ଅନିବାର୍ଯ୍ୟ
ଏବଂ ଅପରିହାର୍ଯ୍ୟ
ନଚେତ୍ ଧୂଳିସାତ୍ ହୋଇଯିବ ତୁମେ
ସନ୍ତ୍ରାସବାଦର ଅତ୍ୟାଚାରରେ
ମନେରଖ ତୁମେ,
ଯୁଦ୍ଧ ବିନା ଶାନ୍ତି ଆସିବନି
ଶାନ୍ତି ପାଇଁ ଯୁଦ୍ଧ କର
ଅବା ମୁକ୍ତି (ସନ୍ତ୍ରାସବାଦରୁ) ପାଇଁ
ପ୍ରସ୍ତୁତ ହୁଅ ତୁମେ ଯୁଦ୍ଧ ପାଇଁ
ଏ ହେଉଛି ଶାନ୍ତିର ଡାକରା
ଅସ୍ତ୍ର ଧରି ଯୁଦ୍ଧ କ୍ଷେତ୍ରେ
ହୁଅ ଅବତୀର୍ଣ୍ଣ,
ଧରଣୀ ମା'
ଶାନ୍ତିରେ ଟିକେ ଛାଡୁ ନିଃଶ୍ୱାସ
ମାଆ କୋଳ ହେଉ ଅଶାନ୍ତି ଶୂନ୍ୟ
ତୁମ ଶେଷ ନିଷ୍ପତ୍ତି ହେଉ
ଯୁଦ୍ଧ ଖାଲି ଯୁଦ୍ଧ ॥





କେତେ ବର୍ଣ୍ଣ, କେତେ ବିଭା, କେତେ ବିଚିତ୍ରତା ଓ ବିବିଧତାରେ ବର୍ଷକ ବାରମାସ ବିତେ । ଯେମିତି ସେ କେଉଁ ସ୍ରଷ୍ଟାର ଚିତ୍ରାୟନ । ସେହିପରି କବି ଶ୍ରୀ ଅରବିନ୍ଦ ଦାଶ ମାଟିରୁ ଆକାଶ, ଈଶ୍ୱରଙ୍କଠାରୁ ନିରୀଶ୍ୱର, ପ୍ରକୃତିର ନାନା ବିଭବ, ଜୀବନ, ସଂପର୍କ, ଦେଶ, ସମାଜ ଓ ସମୟକୁ ନେଇ ବାଢ଼ି ଦିଅନ୍ତି କବିତାର ରଂଗ ବେରଂଗ ପସରାଟିଏ, 'ବାରମାସୀ' । ଗ୍ରାହକମାନେ ରୁଚି ଅନୁସାରେ ବାଛି ନେଇପାରନ୍ତି ଶବ୍ଦ କଳାର ଦରବସବୁ ॥

-ପ୍ରକାଶକ

ISBN 9789393178275

